# ବାବାଜୀ ନାଟକ

## ଜଗନ୍ମୋହନ ଲାଲ୍



ସଂପାଦନା : ଶ୍ରୀ ବେଣୁଧର ରାଉତ

# ବାବାଜୀ

ନାଟ୍ୟକାର

ଜଗନ୍ମୋହନ ଲାଲ୍

ସଂପାଦନା :

ବେଣୁଧର ରାଉତ

ଆର୍ଯ୍ୟ ପ୍ରକାଶନ
ବାଦାମବାଡ଼ି, କଟକ-୧୨

ବାବାଜୀ

ନାଟ୍ୟକାର :
ଜଗନ୍ମୋହନ ଲାଲ

ସଂପାଦନା :
ବେଣୁଧର ରାଉତ

ପ୍ରକାଶକ :
ଆର୍ଯ୍ୟ ପ୍ରକାଶନ
ବାଦାମବାଡ଼ି, କଟକ-୧୨ ।

ISBN.81-7412-178-4

ମୁଦ୍ରଣ :
ଶ୍ରୀଜଗନ୍ନାଥ ଲାମିନେଟ୍ସ
ବାଦାମବାଡ଼ି, କଟକ—୧୨

ପ୍ରଥମ ପ୍ରକାଶନ : ୨୦୦୧

ପ୍ରଚ୍ଛଦପଟ :
ସ୍ୱାହା ମିଶ୍ର

ମୂଲ୍ୟ : ଟ୨୪.୦୦

## ସମର୍ପଣ ପତ୍ର

ନୂତନ ଉତ୍କଳୀୟ ନାଟ୍ୟ ସାହିତ୍ୟର ଏକତମ ତୁଙ୍ଗବ୍ୟକ୍ତିତ୍ୱ ଓ ବରେଣ୍ୟ ନାଟ୍ୟଶିଳ୍ପୀ ରାମଚନ୍ଦ୍ର ମିଶ୍ରଙ୍କ ମହନୀୟ ସ୍ମୃତିରେ, ଆମ ଆଦି ନାଟ୍ୟକାର ଜଗନ୍ମୋହନ ଲାଲ୍‌ଙ୍କର ସେଇ ପ୍ରଥମ ଓଡ଼ିଆ ନାଟକ 'ବାବାଜୀ ନାଟକ'କୁ ମୁଁ ଏବେ 'ବାବାଜୀ'ର ନବକଳେବର ରୂପରେ ସମର୍ପଣ କରୁଛି।

ଭାଇନା, ୧୯୫୯ ବିଷୁବ ସଂଖ୍ୟା 'ଝଙ୍କାର'ରେ ମୋର 'ପ୍ରଥମ ଓଡ଼ିଆ ନାଟକ' ଆଲୋଚନାରେ ସୁଜନସୁଲଭ ଆନନ୍ଦିତ ହେଇ ମତେ ଆପଣ ଯେପରି ଏ ସଂପର୍କରେ ଅଧିକତର ସତ୍ୟ ଉନ୍ମୋଚିତ କରିବାକୁ ପ୍ରେରିତ କଲେ, ଆଉ ସେଭଳି ପ୍ରେରଣା କାହୁଁ ପାଇବି ! ସେଥିପାଇଁ ତ ସଂପାଦନାର ଆଶ୍ରୟ ନେଲି। ଆପଣଙ୍କ କଲ୍ୟାଣରୁ ମୁଁ ଇଥାପରେ ଅଶୀତିପର ବୃଦ୍ଧ ଡାକ୍ତର ଶଙ୍କର ରାଓଙ୍କଠାରୁ ମୋର ଆବଶ୍ୟକ ଉପାଦାନ ଅଯାଚିତ ଭାବେ ପାଇଗଲି।

ଭାଇନା, ଶେଷ କଥାଟି ହଉଚି, ବାବାଜୀର ପ୍ରଥମ ଶତବାର୍ଷିକୀ ସମାରୋହ ରବୀନ୍ଦ୍ରମଣ୍ଡପରେ ମୁଖ୍ୟତ ଆପଣଙ୍କ ପ୍ରେରଣା, ଉତ୍ସାହ ଓ ଉଦ୍ୟମ ଫଳରୁ ତହିଁର ପ୍ରକାଶନ ଜୟନ୍ତିଥିରେ ପାଳିତ ହେଇଯାଇଛି।

ଆପଣଙ୍କ ଆଶୀର୍ବାଦ ଥାଉ, ଏ ଶତବାର୍ଷିକୀ ଜୁବିଲି ସମାରୋହ ଲାଗିରହୁ।

ଆପଣଙ୍କର ଗୁଣାନୁବନ୍ଧ
**ବେଣୁଧର ରାଉତ**

# ପ୍ରଥମ ଓଡ଼ିଆ ନାଟକ

**ବାବାଜୀ ନାଟକର ରଚୟିତା–**

ସେ ହେଉଛନ୍ତି କଟକଜିଲ୍ଲାସ୍ଥ ମାହାଙ୍ଗାଗ୍ରାମର ଜଗନ୍ମୋହନ ଲାଲ୍ (୧୮୩୮-୧୯୧୩)। ପ୍ରଥମେ ତାଙ୍କର କିଞ୍ଚିତ୍ ପରିଚୟ ଦିଆଗଲେ ଏ ନାଟକର ଉଦ୍ଦେଶ୍ୟ ସହିତ ତାଙ୍କର ବ୍ୟକ୍ତିତ୍ୱ ସ୍ପଷ୍ଟ ହୋଇଯିବ। କଲିକତାରୁ ମହର୍ଷି ଦେବେନ୍ଦ୍ରନାଥ ଠାକୁର ଏ ଜିଲ୍ଲାରେଥିବା ତାଙ୍କର ପାଣ୍ଡୁଆ ଜମିଦାରୀ ଦେଖିବାକୁ ଆସିଥିବା ସମୟରେ କଲିକତାର 'ଆଦି ବ୍ରାହ୍ମସମାଜ'ର ଶାଖା ସ୍ୱରୂପ, କଟକର ଗୋଟିଏ ଭଡ଼ା ଘରେ, 'ଆଦି ବ୍ରାହ୍ମସମାଜ' ସ୍ଥାପନ କଲେ, ୧୮୫୯ରେ। ଏଥିରେ ପ୍ରଥମେ ସଭ୍ୟ ଥିଲେ ଜଗମୋହନ ରାୟ, ରାୟବାହାଦୂର ଗୌରୀଶଙ୍କର ରାୟ ଏବଂ ଜଗନ୍ମୋହନ ଲାଲ୍। ଜଗମୋହନ ରାୟ କଟକ ଜିଲ୍ଲାର ଚାୟାଁପାଳ ଗ୍ରାମର ଅଧିବାସୀ; ହୁଗୁଳି କଲେଜରୁ ସିନିୟର ବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଟକରେ ଡେପୁଟି କଲେକ୍ଟର ରୂପେ ନିଯୁକ୍ତ ହୋଇଥିଲେ। ସେ ଲୋକହିତୈଷୀ, ଓଡ଼ିଆ ପ୍ରେମୀ ଓ ବଦାନ୍ୟ ପ୍ରକୃତିର ସଜ୍ଜନ ଥିଲେ। ବ୍ରାହ୍ମ ମନ୍ଦିରଟିଏ ପ୍ରତିଷ୍ଠା କରିବା କଳ୍ପେ ସେ ଚାନ୍ଦା ଏବଂ ଦାନଗ୍ରହଣ ସୂତ୍ରରେ ଅର୍ଥ ସଂଗ୍ରହ କରୁଥାନ୍ତି। ୧୮୬୪ରେ ପ୍ରଫେସର ହରନାଥ ଭଟ୍ଟାଚାର୍ଯ୍ୟ ଆସି କଟକରେ ନବ ବିଧାନ 'ବ୍ରାହ୍ମସମାଜ' ପ୍ରତିଷ୍ଠା କଲେ। ଏହା ଆଦି ସମାଜରୁ ବିଚ୍ଛିନ୍ନ। ତଥାପି ଏଠାରେ ସମସ୍ତ ବ୍ରାହ୍ମ ସଭ୍ୟ ଏକତ୍ର ହୋଇ ଜଗମୋହନ ରାୟଙ୍କ ପୃଷ୍ଠପୋଷକତା, ପରିଚାଳନା ଓ ନେତୃତ୍ୱରେ ଚଳୁଥିଲେ। ସଂଗୃହୀତ ଅର୍ଥ ଏବଂ ଦେବେନ୍ଦ୍ରନାଥଙ୍କ ପର୍ଯ୍ୟାପ୍ତ ଦାନରେ ସେ ୧୮୬୯ରେ ଓଡ଼ିଆ ବଜାରରେ ବ୍ରାହ୍ମ ମନ୍ଦିରଟି ନିର୍ମାଣ କଲେ। ବ୍ରାହ୍ମ ସଭା କିମ୍ବା ସମାବେଶରେ ବିଶେଷ ଭାଗ ନେଉଥିବା ସହିତ ସେ ମଧ୍ୟ ତତ୍କାଳୀନ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ, ରାଜେନ୍ଦ୍ରଲାଲ୍ ମିତ୍ର ପ୍ରଭୃତିଙ୍କ ଓଡ଼ିଆ ଭାଷା ବିରୋଧୀ ପ୍ରଚେଷ୍ଟାର ବିରୋଧୀ 'ଜାତୀୟ ସାହିତ୍ୟ ସଭା'ର ଗୌରୀଶଙ୍କର ରାୟ, ରଙ୍ଗଲାଲ୍ ବନ୍ଦୋପାଧ୍ୟାୟ, କପିଳେଶ୍ୱର ବିଦ୍ୟାଭୂଷଣ, ଜଗମୋହନ ରାୟ ପ୍ରମୁଖଙ୍କ ପରି ଅନ୍ୟତମ ବିଶିଷ୍ଟ ସଭ୍ୟ ଥିଲେ।

ଜଗନ୍ମୋହନ ଲାଲ୍ ବ୍ରାହ୍ମଧର୍ମ ସୂତ୍ରରେ ଜଗମୋହନ ରାୟଙ୍କ ସହିତ ପ୍ରଥମରୁ ଜଡ଼ିତ ଥାଇ କାର୍ଯ୍ୟକାରୀ ସମିତିରେ ସକ୍ରିୟ ସଭ୍ୟ ରହି କେବେ କେବେ ଅଡ଼ିଟର୍ ଦାୟିତ୍ୱ ତୁଲାଉଥିଲେ–ଯେପରି, ଉତ୍କଳ ପ୍ରିଣ୍ଟିଂ କଂପାନିର ଏକତମ ଡାଇରେକ୍ଟର୍

ଥାଇ ମଧ୍ୟ ଉକ୍ତ ଦାୟିତ୍ୱ ସ୍ୱୀକାର କରୁଥିଲେ । ଏହା ସହିତ ମାହାଙ୍ଗାର 'ଇଂରାଜୀ ବର୍ଣ୍ଣାକୁଲର (ମଧ୍ୟ ଇଂରାଜୀ) ବିଦ୍ୟାଳୟ'ର ସେକ୍ରେଟେରୀ ରୂପେ ସେ କାର୍ଯ୍ୟ ନିର୍ବାହ କରୁଥିଲେ। ୧୮୬୬ରେ, ତାଙ୍କର ଦରଖାସ୍ତ ଫଳରେ ଢେଙ୍କାନାଳ ରାଜା ତାଙ୍କ ବିଦ୍ୟାଳୟ ନିମନ୍ତେ ଏକକାଳୀନ ଦଶଟଙ୍କା ଏବଂ ମାସିକ ତିନି ଟଙ୍କା ପ୍ରାପ୍ତିର ମଞ୍ଜୁରୀ ଦେଇଥିଲେ ।

ତେବେ, କଟକ କଚେରି ସିରସ୍ତାରେ ଜଗନ୍ମୋହନ ଲାଲ୍ ସିରସ୍ତାଦାର କର୍ମରେ ବାହେଲ୍ ହୋଇ, କ୍ରମେ ପେସ୍କାରି ପରେ, ବଡ଼ବାବୁ (Head Clerk) ରୂପେ ଚାକିରିରୁ ଅବସର ନେଇଥିଲେ ।

ସେ ଥିଲେ ସ୍ୱଭାବରେ କବି, ସାହିତ୍ୟପ୍ରେମୀ, ବିଶେଷତ ନାଟ୍ୟପ୍ରେମୀ । ସମାଜ ସଂସ୍କାର-ପ୍ରବଣତା ବା ସୁସ୍ଥ ସୁନ୍ଦର ସମାଜ ଚେତନା ଯୋଗୁ, ସେ ଲୋକଙ୍କର ଅନ୍ଧବିଶ୍ୱାସ ଓ କୁସଂସ୍କାରମାନ ନାଟ୍ୟାଭିନୟ ଛଳରେ ଦେଖାଇ ପାରିଲେ ସେମାନଙ୍କ ମନରେ ବିଚାରବୋଧ ଓ ପ୍ରକୃତ ଚେତନା ଜାଗ୍ରତ ହେବ ବୋଲି ଭାବୁଥିଲେ । ତେଣୁ, ୧୮୭୫ରେ ନିଜ ଗ୍ରାମରେ 'ରାଧାକାନ୍ତ ରଙ୍ଗମଞ୍ଚ' ସ୍ଥାପନା କଲେ ।

କଟକରେ ଜଗନ୍ମୋହନ ପ୍ରତି ବ୍ରାହ୍ମ ସମାବେଶରେ ପ୍ରାର୍ଥନାପର ଆଲୋଚନାରେ ଧର୍ମ, ସମାଜ ଓ ଚଳଣିରେ ପ୍ରଚଳିତ ଅନ୍ଧବିଶ୍ୱାସ, କୁସଂସ୍କାର ଏବଂ ମନୋଜାତ ଭୟ ଆଦିର ଉପସ୍ଥାପନା ପୂର୍ବକ ପ୍ରତିକାର ବିଧାନ ବ୍ୟବସ୍ଥା ସଂପର୍କରେ ମତବ୍ୟକ୍ତ କରୁଥିଲେ। ଏହା ଥିଲା ସମସ୍ତ ବ୍ରାହ୍ମ ସଭ୍ୟଙ୍କ ସାଧାରଣ ଉପଜୀବ୍ୟ, ଆଲୋଚ୍ୟ । ଏ ସବୁ ଥିଲା ବହୁ ଦେବଦେବୀ ବିଶ୍ୱାସ, ପ୍ରତିମାପୂଜା, ସମାଜରେ ଭୂତପ୍ରେତ, ଗୁଣିଗାରେଡ଼ି, ବସନ୍ତ, ଓଲାଉଠା ଆଦିରୁ ଉଦ୍‌ଭୂତ ଠାକୁରଠାକୁରାଣୀ, ଜୀବବଳି, ଜାତିପ୍ରଥା, ବାଲିକା କନ୍ୟାଦାନ ପ୍ରଭୃତିରେ ଥିବା ଅନ୍ଧବିଶ୍ୱାସ ଏବଂ ସେ ସମସ୍ତର ନିରାକରଣ ସୂତ୍ରରେ ସଂସ୍କାର ପ୍ରକ୍ରିୟା, ଯେପରି ବ୍ରହ୍ମ ସଗୁଣ ବା ସାକାର ରୂପରେ ଅଗଣିତ ରୂପାଶ୍ରିତ ଦେବଦେବୀ କିଂବା ଅବତାର ହେବା ଭ୍ରାନ୍ତି ସ୍ୱରୂପ ବ୍ରହ୍ମ ନିର୍ଗୁଣ ଏବଂ ଏକ। ତେଣୁ ଆରାଧ୍ୟ ଓ ଗ୍ରହଣୀୟ। ଏହା ଉପନିଷଦୀୟ ଦର୍ଶନରୁ ଉପଲବ୍ଧ ଜ୍ଞାନ, ବ୍ରହ୍ମଚେତନା। ଏହାର ବିଶ୍ୱାସୀମାନେ ବ୍ରାହ୍ମ, ବ୍ରାହ୍ମଧର୍ମୀ।

ବାବାଜୀ ନାଟକ ରଚନା କରିବାକୁ ଜଗନ୍ମୋହନ ଲାଲ୍‌ଙ୍କ କବି ପ୍ରବୃତ୍ତିରେ ନାଟ୍ୟକାର ସୁଲଭ ଇଚ୍ଛାଶକ୍ତିର ସ୍ଫୁରଣ ହେଲା ଏକ ସଦ୍ୟ ଘଟଣାର ପ୍ରଭାବରୁ । କୁସଂସ୍କାରଗ୍ରସ୍ତ ଅନ୍ଧବିଶ୍ୱାସର ନିରାକରଣ ଏବଂ ଲୋକଶିକ୍ଷା ଉଦ୍ଦେଶ୍ୟରେ ତାହା ପ୍ରଯୁକ୍ତ ହେଲା ।

ସେ କାଳର ବକ୍ସିବଜାରସ୍ଥିତ ମକରବା ସାହିଠାରୁ ମହାନଦୀକୂଳ ପର୍ଯ୍ୟନ୍ତ ବିଲ, ଗୋଚର କିଂବା ପଡ଼ିଆ ବ୍ୟତୀତ, ସେଠାରେ ଜନବସତିର ଚିହ୍ନବର୍ଣ୍ଣ ପ୍ରାୟ ନଥିଲା; ମକରବା ନିକଟସ୍ଥ ବିଲକୁ ଲାଗି ନୂଆ ସରକାରୀ ସ୍କୁଲ ପାଖରେ ମୂଲିଆମାନେ ମାଟି ଖୋଳୁଥିବାବେଳେ ଗୋଟିଏ ମୁହଁବନ୍ଦ ମାଠିଆ ପାଇଲେ। ମାଠିଆଟି ଓଜନିଆ

ଲାଗିବାରୁ ଗୁପ୍ତଧନ ଥିବା ଆଶାରେ ସେମାନେ ତା ମୁହଁ ଖୋଲିଦେଲେ। ସୁଉ କରି ପବନଟାଏ ବାହାରିଗଲା (ଆରବ୍ୟ କାହାଣୀର ଜିନି ବାହାରିପଡ଼ିବା ପରି)। ଏଇଠୁ ଅନ୍ଧ ବିଶ୍ୱାସ ଓ କଳ୍ପନାରୁ ଉପୁଜିଲା ଗୋଟାଏ ଭୂତ ଏବଂ ତାକୁ ଆଶ୍ରୟ କରି ନାନା କାହାଣୀ, ତାର ଆତଙ୍କପ୍ରଦ ନାନା କରଣି। ଏପରିକି ଶିକ୍ଷିତ ଲୋକପର୍ଯନ୍ତ ସମସ୍ତେ ଅନ୍ଧବିଶ୍ୱାସରେ ବିଶ୍ୱାସ କରି ଆତଙ୍କଗ୍ରସ୍ତ। ସତ୍ୟାନୁସନ୍ଧାନ ପାଇଁ ବିନ୍ଦୁବିସର୍ଗ ଚେଷ୍ଟା ନାହିଁ କି ଇଚ୍ଛା ନାହିଁ। ଏହା ସାଙ୍ଗକୁ ସାଦା ଝିଡ଼ାବାତି ଓଲାଉଠାର ବଡ଼ ଆକାର ଧରି ନାନା ଗୁଜବ ଦ୍ୱାରା ଉକ୍ତ 'ମକରବା ଭୂତ'ର ମନଗଢ଼ା ଆତଙ୍କକୁ ବଢ଼େଇ ଦେଲା।

ବାବାଜୀ ନାଟକରେ ଏଇସବୁ ଅଜ୍ଞାନପ୍ରସୂତ ଦୂଷଣରୁ ବିଭିନ୍ନ ଚରିତ୍ର ମାଧ୍ୟମରେ ଲୋକଙ୍କୁ ମୁକ୍ତ କରିବାର ପ୍ରୟାସ କରିଛନ୍ତି ଜଗନ୍ମୋହନ ଲାଲ୍‌ଙ୍କ ବ୍ରାହ୍ମଚେତନାର ପ୍ରତିନିଧି ବାବାଜୀ। ସେ ସମୟର କଟକରେ ସମାଜ ଜୀବନର ନିଖୁଣ ଚିତ୍ର ଏଠାରେ ଅଙ୍କିତ। (ଉତ୍କଳ ଦୀପିକା, ୧୧ଶ ଭାଗ, ୨୫।୩।୧୮୭୬, ସଂଖ୍ୟା–୧୩ରେ ମକରବା ଭୂତ ଗୁଜବ ଖବର ପ୍ରକାଶିତ।)

## ପ୍ରଥମ ଓଡ଼ିଆ ନାଟକ, 'ବାବାଜୀ ନାଟକ' ନା 'କାଞ୍ଚିକାବେରୀ'–

ଓଡ଼ିଆ ନାଟକର ପୃଷ୍ଠ ଭୂମି ବା ପ୍ରାଥମିକ ବିକାଶର ଅବସ୍ଥା ବିଶ୍ଳେଷଣ କଲେ ଯାତ୍ରା ସୁଆଙ୍ଗର ରୂପକୁ ଏଡ଼ି ଦବାର ନୁହେଁ। ଯାତ୍ରା ସୁଆଙ୍ଗ ହୁଏତ ନାଟକର ବିକାଶକାଳୀନ ଅବସ୍ଥା ତଥା ଅପୂର୍ଣ ବିକାଶ। ପକ୍ଷାନ୍ତରେ, ନାଟକ ହିଁ ଯାତ୍ରା ସୁଆଙ୍ଗର ଚରମ ବିକଶିତ ଅବସ୍ଥା ତଥା ପୂର୍ଣ ବିକାଶ। ତେଣୁ ବ୍ୟାପକ ଦୃଷ୍ଟିରେ ଦେଖିହେବ–ଯାତ୍ରା ସୁଆଙ୍ଗ, ଗୁଣର ହଉ କି ଅଗୁଣର ହଉ, ନାଟକ ହୋଇପାରେ। କିନ୍ତୁ ନାଟକ ଯାତ୍ରା ସୁଆଙ୍ଗ ହେବ ନାହିଁ। ଏ ବିଚାରରୁ ପ୍ରତିଦେଶୀୟ ସାହିତ୍ୟର ପ୍ରଥମ ନାଟକ ପରି (ଯେମିତି ପ୍ରଥମ ଉପନ୍ୟାସ, ପ୍ରଥମ ମହାକାବ୍ୟ, ପ୍ରଥମ ଗଳ୍ପ ଇତ୍ୟାଦି) ଆମର ପ୍ରଥମ ନାଟକ କିଏ,–ବିଚାରିବା କଥା। ବାବାଜୀ ନାଟକର ଆଠ ନଅ ବର୍ଷ ପୂର୍ବରୁ ପ୍ରକାଶିତ 'ଗୋପୀନାଥ ବଲ୍ଲଭ ନାଟକ' ପ୍ରକାଶିତ ହେଲେ ହେଁ, ତା ଏକାନ୍ତ ଗୀତିବହୁଳ। ସଂସ୍କୃତ ଶ୍ଳୋକ ଛାଞ୍ଚରେ ଲେଖା ଆଉ ମଧ୍ୟ ବାଣଭଟ୍ଟୀୟ ଦୀର୍ଘ ସମାସବହୁଳ ଢଙ୍ଗରେ କଥାଭାଷା ଗଦ୍ୟରେ ଲେଖା। ସଂସ୍କୃତ ନାଟ୍ୟଶାସ୍ତ୍ର ଦଶରୂପକର ଯଥାର୍ଥ ନିର୍ଦ୍ଦେଶ 'ଅବସ୍ଥାନୁକୃତିର୍ନାଟ୍ୟମ୍' ଏଠି ସଂପୂର୍ଣ ଅବହେଳିତ। ଫଳରେ, ଓଡ଼ିଆ ଲିପିରେ ଲିଖିତ ହୋଇ ସୁଦ୍ଧା ଏ ଭାଷା ଓଡ଼ିଆ ନୁହେଁ କି ସଂସ୍କୃତ ନୁହେଁ। ବାବାଜୀର ସମର୍ଥନରେ ବାଲେଶ୍ୱର ସଂବାଦ ବାହିକାର ସେଇ ବର୍ଷ ଡିସେବଂର ପହିଲା ସଂଖ୍ୟାରେ ସଂପାଦକ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ରଘୁନାଥ ପରିଚ୍ଛାଙ୍କର ଉକ୍ତ ନାଟକକୁ ଓଡ଼ିଆ ନାଟକ ରୂପେ ସ୍ୱୀକୃତି ଦେଇନାହାନ୍ତି। ତେଣୁ ଏ ପର୍ଯାୟରେ ତା'ର ପ୍ରଶ୍ନ ନାହିଁ। ତାକୁ ଛାଡ଼ିଦେଲେ–କେତେକ କହନ୍ତି

ଜଗନ୍ମୋହନ ଲାଲ୍‌ଙ୍କର 'ବାବାଜୀ ନାଟକ' ପ୍ରଥମ ନାଟକ। ଅନ୍ୟ କେତେକ କହନ୍ତି ରାମଶଙ୍କର ରାୟଙ୍କର 'କାଞ୍ଚିକାବେରୀ' ପ୍ରଥମ ନାଟକ। କିଂବା, ଏଭଳି କୁହାଯାଇପାରେ, ଓଡ଼ିଆରେ ଅନର୍ସ ଏବଂ ଏମ୍.ଏ. ଛାତ୍ରମାନେ ଜାଣନ୍ତି 'ବାବାଜୀ ନାଟକ' ପ୍ରଥମ ନାଟକ; ଯେହେତୁ ୧୮୭୭ରେ ସର୍ବପ୍ରଥମ ପ୍ରକାଶିତ ଓଡ଼ିଆ ନାଟକ ହିସାବରେ ସେ ଲୋକଲୋଚନର ଗୋଚରକୁ ଆସିଛି। କିନ୍ତୁ ସେମାନେ ପଢ଼ନ୍ତି, ୧୮୮୦ରେ ଅର୍ଥାତ୍ ବାବାଜୀ ନାଟକ ପ୍ରକାଶନର ତିନିବର୍ଷ ପରେ ପ୍ରକାଶିତ କାଞ୍ଚିକାବେରୀ ପ୍ରଥମ ନାଟକ ଏବଂ ଏହା ସେମାନେ ପଢ଼ନ୍ତି 'କାଞ୍ଚିକାବେରୀ'ର ପ୍ରସ୍ତାବନାରେ। ଏଠି ଏଇ ଜାଣିବା କଥା ଏବଂ ପଢ଼ିବା କଥା ଯେପରି କୌତୁକ ସାପେକ୍ଷ, ଆମର ସାଧାରଣ ଧାରଣା ଦୃଷ୍ଟିରୁ ସେଇଭଳି ଆଉ କେତୋଟି ଦୃଷ୍ଟାନ୍ତ ଅଛି, କୁହାଯାଉଛି।

## ପ୍ରଥମ ସ୍ରଷ୍ଟା ରାମଶଙ୍କର ?

ଓଡ଼ିଆ ସାହିତ୍ୟରେ ସାଧାରଣ ଜ୍ଞାନର ଗୋଟିଏ ଘଟଣା ହଉଚି—କବିବର ରାଧାନାଥ ଓଡ଼ିଆରେ ଅମିତ୍ରାକ୍ଷର ଛନ୍ଦର ପ୍ରଥମ ପ୍ରବର୍ତ୍ତକ। ଭକ୍ତକବି ମଧୁସୂଦନ 'ମହାଯାତ୍ରା'ର ମୁଖବନ୍ଧରେ ଲେଖିଛନ୍ତି—ମହାଯାତ୍ରାର ଛନ୍ଦ ଓ ଭାଷା ବିଷୟରେ ମଧ କିଛି କହିବାର ଅଛି। ମହାଯାତ୍ରା ଅମିତ୍ରାକ୍ଷର ଛନ୍ଦରେ ଲିଖିତ ହୋଇଅଛି। ଉତ୍କଳ କାବ୍ୟରେ ଅମିତ୍ରଛନ୍ଦ ପ୍ରବର୍ତ୍ତନର ଏହି ପ୍ରଥମ ଶୁଭ ପ୍ରୟାସ। ଏଥି ପୂର୍ବେ ବଙ୍ଗୀୟ କବିବର ଶ୍ରୀ ମାଇକେଲ ମଧୁସୂଦନ ଦତ୍ତ ବଙ୍ଗଳା ପଦ୍ୟର ପ୍ରକୃତି ଓ ନିୟମ ଆଲୋଚନା କରି ଏହି ଛନ୍ଦକୁ ପ୍ରବର୍ତ୍ତିତ କରିଥିଲେ। ସୁତରାଂ ବଙ୍ଗୀୟ ପଦ୍ୟର ଏକାନ୍ତ ଅନୁରୂପ ଉତ୍କଳ ପଦ୍ୟ ସାହିତ୍ୟ ମଧ୍ୟରେ ଏହି ନୂତନ ଛନ୍ଦର ଅବତାରଣା ଦ୍ୱାରା କବି ଶ୍ରୀ ରାଧାନାଥ କିଛି ମୌଳିକତା ଦେଖାଇ ନାହାନ୍ତି, କିନ୍ତୁ ଏହା ମୁଁ ମୁକ୍ତ କଣ୍ଠରେ କହିପାରେ ଯେ ତାଙ୍କ ଛଡ଼ା ଅନ୍ୟ କୌଣସି ଉତ୍କଳୀୟ ଲେଖକ ଏହି ଛନ୍ଦର ଯଥାଯଥ ପ୍ରୟୋଗ ବିଷୟରେ ଦକ୍ଷତା ଦେଖାଇ ପାରନ୍ତେ ନାହିଁ (ମୁଖବନ୍ଧ— )। କିନ୍ତୁ ରାମଶଙ୍କର ଦାବୀ କରନ୍ତି ଯେ, ସେ ହଉଚନ୍ତି ଓଡ଼ିଆରେ ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତକ। ସେ କହନ୍ତି, 'ଓଡ଼ିଆରେ ଅମିତ୍ରାକ୍ଷର ଛନ୍ଦ ନ ଥିଲା। ମୁଁ କାଞ୍ଚିକାବେରୀ ଲେଖିବାବେଳେ ଅମିତ୍ରାକ୍ଷର ଛନ୍ଦର ସୂତ୍ରପାତ କଲି ଏବଂ କାଳକ୍ରମେ ଓଡ଼ିଆରେ ଅମିତ୍ରାକ୍ଷର ଛନ୍ଦର କାବ୍ୟମାନ ବାହାରି ଜନମନ ମୋହିତ କରୁଅଛି।' (ରାମଶଙ୍କର ଗ୍ରନ୍ଥାବଳୀ—ଭୂମିକା—।/) ଏଠି ପାର୍ଥକ୍ୟ ଏତିକି, ରାଧାନାଥଙ୍କୁ ସାର୍ଟିଫିକେଟ୍ ଦେଉଛନ୍ତି ମଧୁସୂଦନ। କିନ୍ତୁ ରାମଶଙ୍କରଙ୍କୁ ରାମଶଙ୍କର ନିଜେ ହିଁ ଦେଉଚନ୍ତି।

ଆଉ ଗୋଟିଏ ସାଧାରଣତଃ ଜଣା କଥା, —ଉମେଶଚନ୍ଦ୍ର ସରକାରଙ୍କର 'ପଦ୍ମମାଳୀ' ୧୮୮୮ରେ ପ୍ରଥମେ ପ୍ରକାଶିତ ହେଲା; ତାହା ପ୍ରଥମ ଓଡ଼ିଆ ଉପନ୍ୟାସ। ତା'ର ପ୍ରାୟ ତିନି ବର୍ଷ ପରେ, ୧୮୯୧ରେ ପ୍ରକାଶିତ 'ବିବାସିନୀ'ର ଲେଖକ ରାମଶଙ୍କର କହନ୍ତି,

ସେ ପ୍ରଥମ ଓଡ଼ିଆ ଔପନ୍ୟାସିକ। ସେ କହିଚନ୍ତି—''ବିବାସିନୀ ଓଡ଼ିଶାର ପ୍ରଥମ ଉପନ୍ୟାସ—ତାହା ସୁପରିଚିତ ଏବଂ କଲିକତାଠାରୁ ମାନ୍ଦ୍ରାଜ ପର୍ଯନ୍ତ ବିଶ୍ୱବିଦ୍ୟାଳୟଥାଚିର ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହୋଇଅଛି। ମୋର କାଞ୍ଚିକାବେରୀ ଓ ଅନ୍ୟାନ୍ୟ କେତେଖଣ୍ଡ ନାଟକ ମଧ୍ୟ ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହୋଇଥିବାରୁ ମୁଁ ଲେଖନୀ ଧରିବା ସାର୍ଥକ ବୋଲି ବିବେଚନା କରିଅଛି।'' (ରା:ଶ:ଗ୍ରନ୍ଥାବଳୀ– ଭୂମିକା)। କିନ୍ତୁ ଉମେଶଚନ୍ଦ୍ର ସରକାର ସତ୍ୟ କଥାକୁ ବିନୀତ ଭାବରେ କହନ୍ତି,– ''ଐତିହାସିକ ଘଟଣାବଲମ୍ବିତ ହୋଇ କୌଣସି ଉପନ୍ୟାସ ଉତ୍କଳ ଭାଷାରେ ରଚିତ ହୋଇଥିବାର ଆମ୍ଭମାନଙ୍କୁ ଜଣାନାହିଁ।'' (ପଦ୍ମମାଳୀ;—ପ୍ରଥମ ସଂସ୍କରଣ) ତା' ହେଲେ, ପଦ୍ମମାଳୀ ହୁଏତ ପାଠ୍ୟପୁସ୍ତକ ହୋଇ ନ ଥିବ ବୋଲି କ'ଣ ସାର୍ଥକ ନୁହେଁ? ତେଣୁ ପ୍ରଥମ ଉପନ୍ୟାସ ହୋଇପାରିବ ନାହିଁ?

ଏଇପରି ସେ ମଧ୍ୟ କହନ୍ତି—''ହିନ୍ଦୁସ୍ଥାନ ରାଗ-ରାଗିଣୀର ଚର୍ଚ୍ଚା ଓଡ଼ିଆରେ ନ ଥିଲା। କେବଳ ଓଡ଼ିଶୀ ରାଗ-ରାଗିଣୀର ଗୀତ ରଙ୍ଗମଞ୍ଚର ଅନୁପଯୁକ୍ତ ବିବେଚନା କରି ମୁଁ ହିନ୍ଦୁସ୍ଥାନୀ ରାଗ-ରାଗିଣୀରେ ଓଡ଼ିଆ ଗୀତ ବସାଇ କାଞ୍ଚିକାବେରୀରେ ଲୋକ ସମକ୍ଷରେ ପ୍ରଥମେ ଆଗତ କଲି ଏବଂ ତହିଁରେ ଲୋକେ ମୁଗ୍ଧ ହେବା ଦେଖି ଅନ୍ୟ ନାଟକରେ ମଧ୍ୟ ତାହା ବସାଇ ଅଛି।'' (ରା:ଶ: ଗ୍ରନ୍ଥାବଳୀ—ଭୂମିକା) ପୁନଶ୍ଚ, ସେ କହନ୍ତି, ତାଙ୍କର କାଞ୍ଚିକାବେରୀରେ ଅଭିନୟ ଓଡ଼ିଆ ନାଟକର ପ୍ରଥମ ଅଭିନୟ।

ପ୍ରାସଙ୍ଗିକତାର ନୀତିରୁ ଏ ସମସ୍ତର ବିଚାର ଅନ୍ୟତ୍ର। ତେବେ, ପ୍ରଥମ ନାଟକ ବିଷୟରେ ପ୍ରକରଣ ଦୃଷ୍ଟିରୁ ତାଙ୍କର ଅଭ୍ୟାସଗତ ଦାବୀ ପ୍ରଣିଧାନ ଯୋଗ୍ୟ। ସୂତ୍ରଧର 'ନବପ୍ରଣୀତ କାଞ୍ଚିକାବେରୀ' ନାଟକର ଅଭିନୟ କରିବା ପ୍ରତିଶ୍ରୁତି ସ୍ମରଣ କରାଇ ଦବାରୁ ନଟ କହୁଚି,—'ବିଜ୍ଞବର! ଆମ୍ଭେ କହିଥିଲୁଁ ସତ୍ୟ, ମାତ୍ର ତାହା ଓଡ଼ିଆରେ ପ୍ରଥମ ନାଟକ। ଓଡ଼ିଆ ଭାଷା ଏପର୍ଯନ୍ତ ନାଟକୋଚିତ ରୂପେ ମାର୍ଜିତ ହୋଇଛି କି ନା ତାହା ଜଣା ନାହିଁ। ତୁମ୍ଭେ ଏତେ ଶୀଘ୍ର ସେ ନାଟକର ଅଭିନୟ ଦେଖାଇବାକୁ କିପରି ସାହସ କଲ?' (ପ୍ରସ୍ତାବନା) ସେତେବେଳେ ଓଡ଼ିଆ ଭାଷାର ନାଟକୋଚିତ ମାର୍ଜିତ ରୂପ ବିଷୟରେ ରାମଶଙ୍କରଙ୍କର ମନ୍ତବ୍ୟ ସହିତ ତା'ର ବହୁକାଳ ପୂର୍ବରୁ ସୋମନାଥ ବ୍ରତ କଥା, ଚତୁର ବିନୋଦ ବା ବତ୍ରିଶ ସିଂହାସନ—ଅନୁବାଦର ଭାଷା ବିଚାର କଲେ ଜଣାଯିବ, ତାହା ବରଞ୍ଚ ସରଳତର ଏବଂ ଅଧିକତର ମାର୍ଜିତ।

ଏ ସମସ୍ତର ବିଚାରରେ ଜଣାଯାଏ, ଲେଖକ ଯେପରି ଏଇସବୁ ସାହିତ୍ୟିକ କ୍ଷେତ୍ରରେ ପ୍ରଥମ ପୁରୁଷ ବା ପ୍ରଥମ 'ସ୍ରଷ୍ଟା ହବାର ଗୌରବ ହାସଲ କରିବାକୁ ଯଥାସାଧ୍ୟ ଯତ୍ନ କରିଛନ୍ତି ଏବଂ ପ୍ରକୃତ ପ୍ରଥମ ପୁରୁଷମାନଙ୍କୁ ଅସ୍ୱୀକାର ତଥା ବିସ୍ମରଣ କରିଚନ୍ତି। ବୋଧହୁଏ, ଜ୍ଞାତସାରରେ ବିଭିନ୍ନ ଛଳରେ, ବିଭିନ୍ନ ସ୍ଥଳରେ, ଏପରି କରିଚନ୍ତି ଓ କହିଚନ୍ତି।

**ଅନ୍ୟମାନଙ୍କର ମତ**

୧୮୯୨ରେ, ପୂର୍ବପ୍ରକାଶିତ ବାବାଜୀ *, ପଦ୍ମମାଳୀର ପ୍ରକାଶନ ସତ୍ତ୍ୱେ ଫକୀର ମୋହନ ରାମଶଙ୍କରଙ୍କୁ ସମର୍ଥନ କରି କହିଲେ–

"ହେ ରାମଶଙ୍କର ମୋର ମାନୁଛି ମନକୁ
ହୋଇପାର ଭାଇ ତୁମ୍ଭେ ଗଉରୀ ପଛକୁ।
ଓଡ଼ିଆ ନାଟକ ଆଉ ନଭେଲର ଲେଖା
ପ୍ରଥମରେ ତୁମ୍ଭଠାରେ ଗଲା ସିନା ଦେଖା।
ଏତେ ଯେ ଲେଖିଲ ତାହା କେ ଯାଉଛି ଦେଖି
ହେଉ ହେଉ ଆଖିବୁଜି ଯାଉଥାଅ ଲେଖି।
ମୁଣ୍ଡ ପିଟିଦିଏ ତଳେ କଥା ଦେଖି ଭାଇ
ନ ଦେଖିଲା କେହି ଥରେ ଅଣ୍ଡିର କି ମାଇ।"

(ଉତ୍କଳ ଭ୍ରମଣଂ)

ଗିରିଜା ଶଙ୍କର ରାୟ ରାମଶଙ୍କରଙ୍କୁ ପ୍ରଥମ ନାଟ୍ୟକାର ଭାବରେ ତାଙ୍କର 'ଓଡ଼ିଆ ନାଟ୍ୟକଳା'ରେ ସମର୍ଥନ କରିଚନ୍ତି। ଅଥଚ ବାବାଜୀ ସମ୍ପର୍କରେ କହିଚନ୍ତି–"ବାସ୍ତବିକ୍ ଏହି ବାବାଜୀ ନାଟକ ପ୍ରକୃତ ନାଟକ ନୁହେଁ। କିନ୍ତୁ ଏହା ଯାତ୍ରା ଅପେକ୍ଷା ଉନ୍ନତ ଓ ସୁରୁଚିସମ୍ପନ୍ନ। ଏଥିରେ କଥୋପକଥନର ବାହୁଲ୍ୟ ଅଛି, ଚରିତ୍ର ଚିତ୍ରଣର ପ୍ରୟାସ ଅଛି, ମାତ୍ର ନାଟକରେ ଯେଉଁ କଥାବସ୍ତୁର ବିନ୍ୟାସ ଥାଏ ଓ ନାନା ଚରିତ୍ରର ଏକତ୍ର ସମାବେଶରେ କଥାବସ୍ତୁର ସୌନ୍ଦର୍ଯ୍ୟ ସଂପାଦିତ ହୋଇଥାଏ, ଏଥିରେ ସେ ସବୁ କିଛି ନାହିଁ। ଏହା ଅତି ଶିକ୍ଷାପ୍ରଦ ଗୀତିନାଟ୍ୟ ଭିନ୍ନ ଆଉ କିଛି ନୁହେଁ।" (ଓଡ଼ିଆ ନାଟ୍ୟକଳା)। ଅଥଚ ଏହା ଗୀତିନାଟ୍ୟ ନୁହେଁ।

ପ୍ରିୟରଞ୍ଜନ ସେନ୍ ତାଙ୍କର Dramatic Literature ପର୍ଯ୍ୟାୟରେ ଏ ସମ୍ପର୍କରେ କହନ୍ତି, "The next dramatist of note was Jaganmohan Lal who wrote Satinatak; he had previously written Bhramabhanjan, and Babaji, which was practically not a play at all but a sketch with a purpose, it was in the words of Blumhardt "a Drama directed against the use of Intoxicating Drugs," and published from Cuttack in 1877.' (Modern Oriya Literature) ପ୍ରିୟରଞ୍ଜନ ବାବୁ ରାମଶଙ୍କରଙ୍କୁ ପ୍ରଥମ ଓଡ଼ିଆ ନାଟ୍ୟକାର ଭାବରେ ଗ୍ରହଣ କରନ୍ତି। ଏକପକ୍ଷଗତ ପାଠ ଫଳରୁ ସେ ପରପ୍ରତ୍ୟୟନେୟ ବୁଦ୍ଧି ପ୍ରତୀତ ହୁଅନ୍ତି।

ଏବଂ ଜାନକୀବଲ୍ଲଭ ମହାନ୍ତି (କ) କହିଚନ୍ତି, "It is said that in 1880, Ramasankar Ray, produced his first drama 'Kanchikaberi'

in our literature– a drama which came out for the first time in our literature But it can be seen that Sri Jagamohan Lal, a Deputy Collector in Service of the time had already produced a play named the "Babaji'. This of course did not take a full-fledged shape of a drama, most of the qualities of a Jatra, like the introduction of too much of songs, a cheap type of humour, had among others, found place in this work. It is due to these limitations of "Babaji", that could not entitle it to the credit of a drama". (Oriya Literature–ch XIX)

**ଏ ସବୁ ମତର ଯାଥାର୍ଥ୍ୟ:–**

'ବାବାଜୀ' ପ୍ରତି ଏମାନଙ୍କର ଉଦାସୀନତା ତଥା ପ୍ରଥମ ନାଟକ ଭାବରେ ଅସ୍ୱୀକୃତି, ଏବଂ 'କାଞ୍ଚିକାବେରୀ'କୁ ପ୍ରଥମ ନାଟକ ଭାବରେ ସ୍ୱୀକୃତି ବିଷୟରେ ଜଣ ଜଣଙ୍କୁ ନେଇ ବିଚାର କରାଯାଉ–ଏମାନେ କାହିଁକି ଏମିତି କହିଲେ।

ବାବାଜୀର ପ୍ରକାଶନ ପରେ ତା'ର ପ୍ରଚାର ପାଇଁ ଜଗନ୍ମୋହନ ଲାଲ୍ ଉତ୍କଳ ଦୀପିକାରେ ବିଜ୍ଞାପନ ଦେଇଥିଲେ–"ଏ ପୁସ୍ତକରେ ଜଣେ ଯଥାର୍ଥ ସାଧୁର ଚରିତ୍ର, ବାବୁ ଓ ମଠଧାରୀଙ୍କର ଆଚରଣ, ଡାହାଣୀ, ଭୂତ ଓ ଗୁଣି ବିଦ୍ୟାର ପ୍ରସଙ୍ଗ ଓ ରହସ୍ୟ ଓ ହିତକର କଥାମାନ ଅଛି।" (ତା ୨୦–ଅକ୍ଟୋବର–୧୮୭୭)। ଏ ନାଟକର ପ୍ରାପ୍ତି ସ୍ୱୀକାର କରି ଉତ୍କଳ ଦୀପିକାର ସଂପାଦକ ପ୍ରାୟ ତୁଇ ସପ୍ତାହରେ ଲେଖିଲେ,–"ଓଡ଼ିଆ ଭାଷାରେ ଏ ପର୍ଯ୍ୟନ୍ତ ନାଟକ ରଚନା ହୋଇ ନ ଥିଲା। ଏ ପୁସ୍ତକ ତହିଁର ପ୍ରଥମ ପୁସ୍ତକ ଅଟଇ। ଇଂରାଜୀ, ସଂସ୍କୃତ ନାଟକର ଲକ୍ଷଣାନୁସାରେ ଏହାକୁ ପ୍ରକୃତ ନାଟକ ବୋଲିବାକୁ ମନ ବଳୁନାହିଁ। ... ... ... ନାଟକର ଭାଷା ଓ ରଚନାଛଟା କି ପ୍ରକାର ହେବ ଏ ସବୁ ଅତି ଚମତ୍କାରରୂପେ ଗ୍ରନ୍ଥକର୍ତ୍ତା ଦେଖାଇଅଛନ୍ତି। ଭଣ୍ଡ ମଠଧାରୀମାନଙ୍କର ଦୋଷ ପ୍ରକାଶ କରିବା, ଭୂତ, ଡାଆଣୀ, ଜଡ଼ିମନ୍ତ୍ର ଇତ୍ୟାଦି ବିଷୟରେ ଲୋକଙ୍କର ଭ୍ରମ ଓ କୁସଂସ୍କାର ଛେଦନ ଏ ଗ୍ରନ୍ଥର ମୁଖ୍ୟ ଉଦ୍ଦେଶ୍ୟ ଜଣାଯାଏ। ଏହାଦ୍ୱାରା ନାଟକର ବାଟ ଫିଟିଲା, ଏଥର ଅନ୍ୟାନ୍ୟ କୃତବିଦ୍ୟମାନେ ଏ ପକ୍ଷରେ ମନ ଦେଲେ ଅଚିରେ ପ୍ରକୃତ ନାଟକ ଓଡ଼ିଆ ଭାଷାରେ ବାହାରିପାରେ।' (ଉ,ଦୀ, ୩ ନଭେମ୍ବର–୧୮୭୭)।

ରାମଶଙ୍କର–ଏଇ ଶେଷ ବାକ୍ୟୋକ୍ତ ମନ୍ତବ୍ୟର ସୁଯୋଗ ନେଲେ ରାମଶଙ୍କର। ସେତେବେଳେ ସେ ପ୍ରଥମ ହୋଇ କଲେଜ ଛାତ୍ର ହଉଥାନ୍ତି କିମ୍ବା ହେଇଥାନ୍ତି। ଇଂରାଜୀ ବା ସଂସ୍କୃତ ନାଟକର ଲକ୍ଷଣାନୁସାରେ ଲେଖା ନ ହେଲେ ପ୍ରକୃତ ନାଟକ

ହୋଇ ପାରିବ ନାହିଁ ବୋଲି ସଂପାଦକ ଏବଂ ଜ୍ୟେଷ୍ଠଭ୍ରାତା ଗୌରୀଶଙ୍କରଙ୍କର ଉକ୍ତ ମତ ତାଙ୍କୁ 'ପ୍ରକୃତ ନାଟକ'ର ସରଣୀ ଦେଖାଇଲା। ବାବାଜୀ ଜନ୍ମର ତିନି ବର୍ଷ ପରେ ଯୁବକ ରାମଶଙ୍କର ନାନ୍ଦୀ, ପ୍ରସ୍ତାବନା ପ୍ରଭୃତି ସଂସ୍କୃତ ନାଟକର କେତେକ ଲକ୍ଷଣ ମାନି କାଞ୍ଚିକାବେରୀ ଲେଖିଲେ। ତେଣୁ ନଟମୁଖରେ, ପଶ୍ଚାତରେ ନିଜ ମୁଖରେ ନିଜକୁ ପ୍ରଥମ ଓଡ଼ିଆ ନାଟ୍ୟକାର ଭାବରେ ସାବ୍ୟସ୍ତ କଲେ, ଏବଂ ଗୌରୀଶଙ୍କରଙ୍କର ''ଏହାକୁ (ବାବାଜୀକୁ) 'ପ୍ରକୃତ ନାଟକ' ବୋଲିବାକୁ ମନ ବଳୁ ନାହିଁ''—ମତପୋଷଣ କରି ତାକୁ ସଂପୂର୍ଣ୍ଣତ ଅସ୍ୱୀକାର (ignore) କରିଛନ୍ତି।

**ଫକୀରମୋହନ**—ସେଇଭଳି, ଫକୀରମୋହନଙ୍କର ଧାରଣା ପରୀକ୍ଷାକଲେ ଦେଖାଯିବ ଯେ, ରାମଶଙ୍କର ଓରଫ୍ ନଟର ଉକ୍ତିକି ସେ ସମର୍ଥନ କରିଛନ୍ତି। ବାବାଜୀ ବିଷୟରେ ସେ ନୀରବ। କାରଣ ସଂସ୍କୃତ ନାଟକର ଅନୁସାରୀ ନୁହେଁ। ତା ଛଡ଼ା, 'ବିବାସିନୀ'କାର ସେଇ ରାମଶଙ୍କରଙ୍କୁ ପ୍ରଥମ ଔପନ୍ୟାସିକ ବୋଲି କହିବାର ମାତ୍ର ବର୍ଷକ ପୂର୍ବେ ବିବାସିନୀ ପ୍ରକାଶିତ। ୧୮୯୧ରେ ଉତ୍କଳ ପ୍ରଭା ପାଇଁ ତାହା ଉଦ୍ଦିଷ୍ଟ ଥିଲା। ବରଂ ୧୮୯୧ ପୂର୍ବରୁ 'ଉତ୍କଳ ମଧୁପ'ରେ ପ୍ରକାଶ ପାଉଥିବା 'ସୌଦାମିନୀ'କୁ—ଅସଂପୂର୍ଣ୍ଣ ହେଉ ପଛକେ—ପ୍ରଥମ ଉପନ୍ୟାସ କହି ପାରିଥାନ୍ତେ; ଯେପରି ମହାଯାତ୍ରା ଅସଂପୂର୍ଣ୍ଣ ହୋଇ ମଧ ଆଧୁନିକ ପ୍ରଥମ ଓଡ଼ିଆ ମହାକାବ୍ୟ। ଅନ୍ତତ ବିବାସିନୀର ପ୍ରାୟ ତନି ବର୍ଷ ପୂର୍ବେ ପ୍ରକାଶିତ 'ପଦ୍ମମାଳୀ'କୁ ସେ ବିସୋରି ଦେଇଚନ୍ତି। ତେଣୁ ମନେହୁଏ ଫକୀରମୋହନ ବିଶେଷ ଧ୍ୟାନର ସହିତ ନିଜ ମତାମତ ଦେଇ ନାହାନ୍ତି। ବିଚାର କଲେ ମଧ 'ଉତ୍କଳ ଭ୍ରମଣଂ'ର ମନ୍ତବ୍ୟାବଳୀ ଏକାବେଳକେ ଧରାବନ୍ଧା ନୁହେଁ। କବିତ୍ୱର ପାରିହାସିକ ପରିବେଶରେ ସେ ସମସ୍ତ ଲଣା ଅଧିକେ ବିନ୍ୟସ୍ତ।

**ଗିରିଜାଶଙ୍କର**—'କାଞ୍ଚିକାବେରୀ ପ୍ରଥମ ଓଡ଼ିଆ ନାଟକ' ଏବଂ 'ଏହାକୁ (ବାବାଜୀକୁ) ପ୍ରକୃତ ନାଟକ ବୋଲିବାକୁ ମନ ବଳୁନାହିଁ'—କ୍ରମତ ରାମଶଙ୍କର ଏବଂ ଗୌରୀଶଙ୍କରଙ୍କର ଏ ଦୁଇଟି ମତର ଭିତ୍ତିରେ ଗିରିଜାଶଙ୍କର ସମର୍ଥନ କରନ୍ତି ଯେ କାଞ୍ଚିକାବେରୀ ପ୍ରଥମ ଓଡ଼ିଆ ନାଟକ ଏବଂ 'ପ୍ରକୃତ ନାଟକ'। ତେଣୁ ସେ ବାବାଜୀ ବିଷୟରେ କହନ୍ତି—''ବାସ୍ତବିକ୍ ଏହା ପ୍ରକୃତ ନାଟକ ନୁହେଁ।'' ବାବାଜୀ ଏ ହିସାବରେ ଅ-ନାଟକ ହୋଇ ବାଦ ପଡ଼ିଗଲେ କାଞ୍ଚିକାବେରୀ ପ୍ରଥମ ହଉଚି। ଏଥିରେ ପୂର୍ବୋକ୍ତ ଯୁଗଳ ମତ ଓ ମନ୍ତବ୍ୟର ସଂଶ୍ଲେଷିତ ପ୍ରତିଧ୍ୱନି ମାତ୍ର ନିହିତ। ଅତଏ ବାବାଜୀ ପ୍ରତି ଗିରିଜାଶଙ୍କରଙ୍କର ଏ ମନ୍ତବ୍ୟର ପରୋକ୍ଷ ଭିତ୍ତି ଅଛି ଏବଂ ଗିରିଜାଶଙ୍କରଙ୍କର ଭିତ୍ତି ଓ ଯୁକ୍ତି ଅନୁସୃତିରେ ପ୍ରିୟରଂଜନ ସେନ ଓ ଜାନକୀବଲ୍ଲଭ ମଧ ତାହାଇ କହନ୍ତି।

**ତିଳ ତାଳ ଉଦନ୍ତ–**

ଅନୁମାନ ବଳରେ, ଲୋକମୁଖରେ କିଛିଦ୍ ସତ୍ୟ ବା ଅସତ୍ୟ, କ୍ରମଶ, କିପରି ଅଧିକ-ଅଧିକତର-ଅଧିକତମ କଳ୍ପନାଶ୍ରିତ ତଥା କଳ୍ପନାଙ୍କିତ ହୋଇପଡ଼େ, ତିଳକୁ ତାଳ କରି ଥୋଇବା ବିଧି ତା'ର ଗୋଟିଏ ସୂଚୀ। ଏ ବି ଗୋଟାଏ ସହଜ ଓ ସାଧାରଣ ପ୍ରବୃତ୍ତି। ଏଇ କାରଣରୁ ବାବାଜୀ କ୍ଷେତ୍ରରେ ଘଟିଥିବା କେତୋଟି କଥା ଦେଖାଯାଉ।

"ବାସ୍ତବିକ ଏହି ବାବାଜୀ ନାଟକ ପ୍ରକୃତ ନାଟକ ନୁହେଁ"–ଏ ମନ୍ତବ୍ୟରେ ପୂର୍ବୋକ୍ତ କିଛିଦ୍ ସତ୍ୟ ହିଁ ନିହିତ। ତଥା, ତା'ର ପରବର୍ତୀ ଭାଗ–'କିନ୍ତୁ ଏହା ଯାତ୍ରା ଅପେକ୍ଷା ଉନ୍ନତ ଓ ସୁରୁଚିସଂପନ୍ନ। ଏଥିରେ କଥୋପକଥନର ବାହୁଲ୍ୟ ଅଛି, ଚରିତ୍ର ଚିତ୍ରଣର ପ୍ରୟାସ ଅଛି...।" ଦେଖିଲେ ଜଣାଯିବ, ସେ କାଳ ଓଡ଼ିଶାର ଯାତ୍ରା ସୁଆଙ୍ଗ-ବହୁଳ ପରିବେଶରେ ବାବାଜୀ ପ୍ରକୃତ ନାଟକ ନ ହେଲେ କ'ଣ ହୋଇପାରେ ଗିରିଜା ବାବୁ ଅନୁମାନ କରି ନେଇଚନ୍ତି। ତେଣୁ ବାବାଜୀ ଯାତ୍ରା ହେଲା ନାହିଁ କି ନାଟକ ହେଲା ନାହିଁ। ତାକୁ ଯାତ୍ରା ଅପେକ୍ଷା ଅଧିକ ଉନ୍ନତ ଓ ସୁରୁଚିସଂପନ୍ନ କରି ଦିଆଗଲା ଏବଂ କଥୋପକଥନ-ବାହୁଲ୍ୟ ନାଟକର ଗୋଟାଏ ବଡ଼ ଦୋଷ ହେତୁ ବାବାଜୀରେ ତା'ର ଆରୋପ କରାଯାଇଚି। ଅଥଚ କାଞ୍ଚିକାବେରୀର କେତେକ ଦୀର୍ଘ ସଂଳାପ ବାବାଜୀର ଦୀର୍ଘତମ ସଂଳାପର ପ୍ରାୟ ଦୁଇ ତିନିଗୁଣ ଅଧିକ। ବୋଧହୁଏ ବାବାଜୀ ନ ଦେଖି ଏ ମନ୍ତବ୍ୟ ପ୍ରକାଶ କରିଥିବାର ଏହା ଅନୁମାନମୂଳକ ତଥା ଭ୍ରମାତ୍ମକ ହୋଇଚି। ଅନ୍ୟମାନଙ୍କୁ ଭ୍ରମରେ ପକାଇଚି। ତେଣୁ ଜାନକୀ ବଲ୍ଲଭ ସେ କେତୋଟି କଥାର ଏପାଖ ସେପାଖ କରି ଏ ଅନୁମାନ ଭ୍ରମଟିର ଆବୃତ୍ତି କରିଚନ୍ତି–most of the qualities of Jatra like the introduction of too much of songs, a cheap type of humour, had among others, found place in this work. ଏ ବି ହେଲା ଅନୁମାନ ଭାଗ। ଏପରିକି ଗୀତିବାହୁଲ୍ୟ କଥା ସୂଚେଇବା ବେଳେ ଗିରିଜା ବାବୁଙ୍କର–ଗୀତିନାଟ୍ୟ ଭିନ୍ନ ଆଉ କିଛି ନୁହେଁ–ଉକ୍ତିର ପ୍ରତିଧ୍ୱନି ଓ ସମର୍ଥନ କରିଚନ୍ତି। ବରଂ ପ୍ରିୟରଞ୍ଜନଙ୍କର ଅନୁମାନ–which was practically not a play at all but a sketch with a purpose–ଅନେକତ ଠିକ୍ ହୋଇପାରେ କେବଳ ରେଖାଙ୍କିତ ଅଂଶଟି ପାଇଁ। କିନ୍ତୁ it was in the words of Blumhardt, "a Drama directed against the use of Intoxicating Druga" ଲେଖି ବାବାଜୀର ପରିସର ଓ ଉଦ୍ଦେଶ୍ୟକୁ ଅତି ସଂକୀର୍ଣ୍ଣ କରି ପକାଇଚନ୍ତି।

ବାବାଜୀ ଗୀତିନାଟ୍ୟ ନୁହେଁ। ବୈଷ୍ଣବ ପାଣି ବା ବାଳକୃଷ୍ଣଙ୍କର ଯାତ୍ରା ଓରଫ ଗୀତିନାଟ୍ୟ ଧାରଣାରେ ଗିରିଜା ବାବୁ ଯଦି ବାବାଜୀକୁ ଗୀତିନାଟ୍ୟ କହନ୍ତି, ତା' ଠିକ୍ ହବ ନାହିଁ। କାରଣ ଏ ସବୁରେ, ଅନେକତ ଗଦ୍ୟ ପଦ୍ୟର ମିଶାମିଶି

ଲକ୍ଷଣ ସେଠି ଆଦୌ ନାହିଁ ଏବଂ ରାମଶଙ୍କରଙ୍କର 'ବଡ଼ଲୋକ' ଯାତ୍ରା ଓରଫ୍ ଗୀତିନାଟ୍ୟ ଭିତ୍ତିରେ ଯଦି ତା କହିଥାନ୍ତି, ତା ମଧ୍ୟ ଠିକ୍ ହବନାହିଁ। କାରଣ, ଉଦ୍ଦେଶ୍ୟ, ପରିବେଶ, ପରିବେଷଣ, ସଂଳାପ ପ୍ରଭୃତି ନାନା ଦିଗରୁ ଉଭୟଙ୍କଠାରେ ତାରତମ୍ୟ ଖୁବ୍ ବେଶୀ। ଗୀତିନାଟ୍ୟର ଲକ୍ଷଣ ବାବାଜୀରେ ନାହିଁ କହିଲେ ଚଳେ। Comic opera, Romantic opera, operetta ପ୍ରଭୃତି ଗୀତିନାଟ୍ୟମାନଙ୍କରୁ କାହାରି ନିର୍ଦ୍ଦିଷ୍ଟ ଲକ୍ଷଣ ଏଠି ପ୍ରାୟ ନାହିଁ। ଗୀତିନାଟ୍ୟର ଭେଦ, ଲକ୍ଷଣ, ବିଷୟରେ ପଣ୍ଡିତ ସୀତାରାମ ଚତୁର୍ବେଦୀ ବି କହନ୍ତି, "ସଂଗୀତ ନାଟ୍ୟ କେ ନିମ୍ନଲିଖିତ ଅଙ୍ଗ ହୋତେ ହେଁ, ୧-ପ୍ରସ୍ତାବନା, ୨- କଥା, ୩-ସଂବାଦାଭିନୟ, ୪-ଗୀତ, ୫-ନର୍ତନ, ଗୀତିନାଟ୍ୟ ମେଁ ସବ କୁଛ ଗୀତୋଁ ମେଁ ହୋତା ହୟ, ଯେ ଗୀତ ଅଭିନେତା ନହିଁ ଗାତେ ହେଁ ବରଂ ଏକ ଗାୟକମଣ୍ଡଲୀ ଗାତୀ ହୟ। ଇସ ଗାୟକମଣ୍ଡଳୀ ମେଁ ପ୍ରତ୍ୟେକ ପାତ୍ରକେ ପ୍ରତିନିଧି ଗାୟକ ହୋତେ ହୈ" ଇତ୍ୟାଦି। ଆମ ଓଡ଼ିଶାର ଯାତ୍ରା ବା ଗୀତିନାଟ୍ୟ (ବୈଷ୍ଣବ ପାଣି ବା ବାଳକୃଷ୍ଣ ମହାନ୍ତିଙ୍କର) ସହିତ କିଛିତ୍ ସାଦୃଶ୍ୟଗତ ଲକ୍ଷଣ ଏ ଭିତରୁ ଥାଇପାରେ। ବାବାଜୀରେ ଏ ସବୁ କିଛି ନାହିଁ। ରାମଲୀଳା ବା କୃଷ୍ଣଲୀଳା ଏ ଲକ୍ଷଣ ଭିତରେ ଆସିବେ, କିଂବା ଗୋପୀନାଥବଲ୍ଲଭ ବା ମାନଭଞ୍ଜନ ଏ ଦୃଷ୍ଟିରୁ ନିଶ୍ଚିତ ଗୀତିନାଟ୍ୟ।

ତା ଛଡ଼ା, ସମଗ୍ର ବାବାଜୀରେ ତିନୋଟି ମାତ୍ର ଗୀତ ଅଛି। ସଂକ୍ଷିପ୍ତ ଭଜନ ଏବଂ ଚତୁର୍ଥ ସ୍ଥାନରେ ନାୟକ ବାବାଜୀ ଭଜନ ଗାଇବା ନିର୍ଦ୍ଦେଶ ଥାଇ ମଧ୍ୟ ଭଜନ ନାହିଁ। ଦେଖିବାକୁ ଗଲେ, କାଞ୍ଚିକାବେରୀ ଯାତ୍ରା ନ ହେଲେ ବି ସାନ ବଡ଼ ପନ୍ଦରଟି ଗୀତରେ ମଣ୍ଡିତ। କେବଳ ପ୍ରସ୍ତାବନାରେ ତିନୋଟି। ତେଣୁ ମନେହୁଏ, ବାବାଜୀକୁ ଗିରିଜାବାବୁଙ୍କର ଗୀତିନାଟ୍ୟ କହିବା ମୂଳରେ ହୁଏତ ସମ୍ଭାବିତ କଳ୍ପନା ବିଦ୍ୟମାନ। ଜାନକୀବାବୁ ଏ ଧାରଣାକୁ ନିର୍ବିଚାରରେ ଗ୍ରହଣ କରିନେବା କଥା କୁହାଯାଇଚି ଏବଂ ଆଉ ଟିକିଏ ଯୋଗ କରି ଜାନକୀବାବୁ କହିଲେ ସେ ବାବାଜୀ—'a cheap type of humour...' ବା ଶସ୍ତା ହାସ୍ୟରସାଶ୍ରିତ—ଯେମିତି, ଯାତ୍ରା। ତେଣୁ, ଥିବା ତିଳକୁ ବା ନ ଥିବା ତିଳକୁ ତାଳ କରାଯାଇଚି।

**ବାବାଜୀ ନାଟକ ବନାମ କାଞ୍ଚିକାବେରୀ—**

ଆଲୋଚିତ ଅନୁମାନ ବା ତିଳ-ତାଳଭାଗ ଛାଡ଼ିଦେଲେ, ବାବାଜୀକୁ ନାଟକ ହିସାବରେ ଯେଉଁମାନେ ମନ୍ତବ୍ୟ ଦେଇଚନ୍ତି ସମସ୍ତେ ସମ୍ପାଦକ ଗୌରୀଶଙ୍କରଙ୍କର ଇଂରାଜୀ, ସଂସ୍କୃତ ନାଟକର ଲକ୍ଷଣାନୁସାରେ "ଏହାକୁ ପ୍ରକୃତ ନାଟକ ବୋଲିବାକୁ ମନ ବଳୁନାହିଁ"—ମତର ଆବୃତ୍ତି ଅନୁବୃତ୍ତି ମାତ୍ର ହିଁ କରିଥିବାରୁ କେଉଁଠି ମନ୍ତବ୍ୟର ଦୃଢ଼ତା ସୂଚିତ ହୁଏନାହିଁ। କାଞ୍ଚିକାବେରୀ ସଂସ୍କୃତ ନାଟକ ଲକ୍ଷଣ ମାନି ରଚିତ ବୋଲି ପ୍ରକୃତ ନାଟକ ଭାବରେ ପ୍ରଥମ ସ୍ଥାନ ପାଇବାର ପୁନର୍ବିଚାର ପ୍ରୟୋଜନ।

ଯେହେତୁ, ଗୌରୀଶଙ୍କର ଏ ମନ୍ତବ୍ୟ ଦେବାବେଳେ, ତତ୍କାଳୀନ ସାହିତ୍ୟିକ କ୍ଷେତ୍ର ବା ପରିବେଶରେ ସଂସ୍କୃତ ନାଟକ ପଦ୍ଧତି ହିଁ ଆଦର୍ଶ ଥିବା କଥା, ତେଣୁ ସେ କାଳରେ ନାନ୍ଦୀ, ସୂତ୍ରଧର ନଟନଟୀ ପ୍ରଭୃତି ଲକ୍ଷଣ କାଞ୍ଚିକାବେରୀ, ବନବାଳା, ସୀତା ବିବାହ, ଧ୍ରୁବତପସ୍ୟା ପ୍ରଭୃତି ନାଟକାବଳୀରେ ବିଦ୍ୟମାନ। ସେଇ ଭଙ୍ଗିରେ କାଞ୍ଚିକାବେରୀର ନାୟକ ନାୟିକା ଅଭିଜାତ, ସର୍ବଗୁଣାଧାର। ଏଇପରି ଅନ୍ୟାନ୍ୟ ଦିଗ ବିଚାରଣୀୟ। କିନ୍ତୁ ଇଂରାଜୀ ନାଟକ ଲକ୍ଷଣର ଉଲ୍ଲେଖ କଲେ ମଧ, ସେତେବେଳେ ଇଂରେଜ ଶିକ୍ଷାର ବହୁଳ ପ୍ରସାରର ଅଭାବ ଯୋଗୁ ସେ ନାଟ୍ୟରଚନା ପଦ୍ଧତି ସଂସ୍କୃତ ଅପେକ୍ଷା ସରଳତର ଏବଂ ସ୍ୱାଭାବିକତର ହବା ସତ୍ତ୍ୱେ କେହି ପ୍ରାୟ ଗ୍ରହଣ କରୁ ନ ଥିବେ ତା'ର ପ୍ରମାଣ ନିଜେ ରାମଶଙ୍କର। ପ୍ରସ୍ତାବନା ତ ତାଙ୍କର ପ୍ରାୟ ସମସ୍ତ ନାଟ୍ୟରଚନାରେ। ଏପରିକି Macbeth ପ୍ରଥମ ଦୃଶ୍ୟରେ ଥିବା three witches ପ୍ରବାଦରେ ସେ ପାଞ୍ଚଟି ଅଦୃଷ୍ଟକୁମାରୀ ସୃଷ୍ଟି କରିଚନ୍ତି 'ବଡ଼ଲୋକ'ରେ। ତା' ପୁଣି ସଂସ୍କୃତ-ଅନୁସାରୀ ପ୍ରସ୍ତାବନାରେ। ସାମାଜିକ ଘଟଣା ପରିବେଷଣରେ ଏଠି ଅଦୃଷ୍ଟକୁମାରୀ ଛଳରେ ଅବାସ୍ତବତା ବା ଅତିଭୌତିକତା ଏକାନ୍ତ ଅବାଞ୍ଛନୀୟ।

କାଞ୍ଚିକାବେରୀ ସଂସ୍କୃତ ନାଟକ ରୀତି ଅନୁସୃତ ହେଲେହେଁ ଇଂରାଜୀ ନାଟକର ସାଧାରଣ ରଚନା ରୀତି ତା'ଠାରୁ ବାବାଜୀରେ ପ୍ରକୃତରେ ଅଧିକ ଅଛି। ଅଭିନୟ ଯୋଗ୍ୟତା, ସଂଳାପଯୋଗ୍ୟ ଭାଷା, ସ୍ୱାଭାବିକତା ବା ବାସ୍ତବଧର୍ମିତା ପ୍ରଭୃତି ଦୃଷ୍ଟିରୁ ବାବାଜୀ ଆଧୁନିକତର। କିନ୍ତୁ, କୌଣସି ମୌଳିକ କିଂବା ଅନୂଦିତ ସଂସ୍କୃତ ନାଟକ ଏବେ ଅଭିନୟଯୋଗ୍ୟ ହେଇ ନ ପାରେ, ବିଶେଷତ ତା'ର ଶ୍ଳୋକବାହୁଲ୍ୟ ତାକୁ 'ଯାତ୍ରା' ଭଳି କରି ପକାଇବ। ତେଣୁ ଆମେ ମୁଖ୍ୟତ କାବ୍ୟ ଭଙ୍ଗିରେ ବା 'କାବ୍ୟେଷୁ ନାଟକଂ ରମ୍ୟଂ' ପରିପ୍ରେକ୍ଷିରେ ତା ପଢୁଁ। ଦୃଷ୍ଟାନ୍ତସ୍ୱରୂପ, ଅଭିଜ୍ଞାନ ଶକୁନ୍ତଳା, ବା ମଧୁସୂଦନଙ୍କର ଅନୂଦିତ ଉତ୍ତରରାମଚରିତର ଅଭିନୟ କଳ୍ପନା କରାଯାଉ। ଏ ହିସାବରେ କାଞ୍ଚିକାବେରୀ ବର୍ତ୍ତମାନ ପାଇଁ ଅଥବା ଏ ଅବଧି 'ପାଠ୍ୟ' ନାଟକ ହୋଇ ରହିଚି ସିନା, 'ଦୃଶ୍ୟ' ନାଟକ ହବାର ସମ୍ଭାବନା ନାହିଁ। ପକ୍ଷାନ୍ତରେ, ଦୃଷ୍ଟାନ୍ତ ହିସାବରେ ଏବକୁ ପୁରୁଣା Goldsmithଙ୍କର 'She stoops to conquer' ଭଳି 'ବାବାଜୀ' ଏବେ ମଧ ଅଭିନୟଯୋଗ୍ୟ ହେଇ ରହିଚି।

ସମ୍ୟକ ପ୍ରାଞ୍ଜଳ ବିଶ୍ଳେଷଣରେ ଦୁଇଟିର ନାଟ୍ୟଧର୍ମ, ନାଟ୍ୟକର୍ମ କୁହାଯାଉଚି।

**ପରୀକ୍ଷା-ନିରୀକ୍ଷା**

(କ) କଥାପୀଠ:—କାଞ୍ଚିକାବେରୀର କଥାବସ୍ତୁ ନିଷ୍କର୍ଷ, ଜଗନ୍ନାଥ ବଳଭଦ୍ରଙ୍କ ସାହାଯ୍ୟରେ ଉତ୍କଳରାଜା ପୁରୁଷୋତ୍ତମଙ୍କର କାଞ୍ଚି ବିଜୟ ଏବଂ ପଦ୍ମାବତୀ ଲାଭ। ଯା ସହିତ, ମାଣିକ ଗଉଡୁଣୀଠାରୁ ଠାକୁର ଦୁହିଁଙ୍କର ମୁଦି ବନ୍ଧା ଦେଇ ଦହି ଖାଇବା କଥା ଗୋଟିଏ ଜାତୀୟ କିଂବଦନ୍ତୀ ଭାବରେ ଜଡ଼ିତ। ଐତିହାସିକ ଘଟଣା

ଓଡ଼ିଶା ଇତିହାସର ଗୋଟିଏ ଗୌରବୋଜ୍ଜ୍ୱଳ ପୃଷ୍ଠା । ରଥଯାତ୍ରାର ଚାଣ୍ଡାଳ ଭୂମିକାରେ ପଦ୍ମାବତୀ ଗ୍ରହଣ ଉପାଖ୍ୟାନ ବେଶ୍ ଉପଭୋଗ୍ୟ, ଯେହେତୁ କବିତ୍ୱପୂର୍ଣ୍ଣ । ଏସବୁ କାଞ୍ଚିକାବେରୀ ଛନ୍ଦରେ ନାଟକୀକୃତ ।

କିନ୍ତୁ ତା'ର କଥାବସ୍ତୁରେ ସେ ସମୟର ସାମାଜିକ ଛବି ଏଠାରେ ଉତ୍ତମ ପ୍ରଦର୍ଶିତ ହୋଇପାରି ନାହିଁ । ବରଂ ଠାକୁର ରଜା ଏବଂ ବଡ଼ ଠାକୁର ଦୁହିଁଙ୍କି କେନ୍ଦ୍ର କରି ନାଟକଟି ମୁଖ୍ୟତ ରଚିତ ହୋଇଛି ଏବଂ କାଞ୍ଚିଯୁଦ୍ଧ ମଧ୍ୟ ଘଟିଛି ପୁରୁଷୋତ୍ତମ ପଦ୍ମାବତୀଙ୍କର ପ୍ରେମ ପାଇଁ । ଏହା ଜାତୀୟ କିଂବଦନ୍ତୀ ହୋଇ ବି ସାମନ୍ତବାଦୀ ଭଙ୍ଗିର । ପୁଣି, ଏ ଯୁଦ୍ଧରେ ସେନାପତିଙ୍କ ଅପେକ୍ଷା ଜଗନ୍ନାଥଙ୍କ ମହାପ୍ରୁଆର ମୁଖ୍ୟ ହୋଇଛି । ଉତ୍କଳ ସୈନ୍ୟଙ୍କ ଶୌର୍ଯବୀର୍ଯ ଅପେକ୍ଷା ସୈନ୍ୟ ବେଶୀ । ବଡ଼ଠାକୁର ଦୁହିଙ୍କର ମାହାତ୍ମ୍ୟ ମୁଖ୍ୟ ହୋଇଛି । କାଞ୍ଚିରାଜା କହିଚନ୍ତି, "କି ହେବ ? ଦେଖୁ ଦେଖୁ ଦୁଇଟା ତରବାରୀ ଆସି ଆମର ଚାବନ୍ଦ୍ୱଳଙ୍କୁ କାଟି ପକାଇଲେ ।" ତେଣୁ କାଞ୍ଚିଯୁଦ୍ଧ ଚସ୍ଥିତ ହୋଇଛି ଗଣପତି ରାଜ କାଞ୍ଚି ସୈନ୍ୟଙ୍କ ସହିତ ଇଚ୍ଛାମୟ ଜଗନ୍ନାଥ ବଳଭଦ୍ରଙ୍କର । ଏ ଦୃଷ୍ଟିରୁ ଓଡ଼ିଆ ସୈନ୍ୟଙ୍କୁ ଭକ୍ତଜାତି କୁହାଯିବା ଭଲ, କିନ୍ତୁ ବୀରଜାତି ନୁହେଁ । ବିଚାରିଲେ, ବାସ୍ତବ ସାମାଜିକ ଜୀବନ ତଥା ସାମାଜିକ ବାସ୍ତବ ଜୀବନର ପ୍ରତିବିଂବିତ୍ୱ ବା ସଂଘର୍ଷାଦି ଏଠି ନାହିଁ କିଂବା ଅତ୍ୟଳ୍ପ । କିନ୍ତୁ ବାବାଜୀରେ ସାମାଜିକ ଜୀବନର ପ୍ରତିବିଂବତ୍ୱ ରହିଚି, ଯଦିଚ ଏହା ଆଂଶିକ । ସେ ଅଂଶଟି ରକ୍ଷଣଶୀଳ, ଅନ୍ଧବିଶ୍ୱାସୀ, କୁସଂସ୍କାରଗ୍ରସ୍ତ ଓ ଭ୍ରାନ୍ତ ମନର ପୂର୍ଣ୍ଣ ବିଶ୍ୱାସର ବି ନୁହେଁ । କିନ୍ତୁ ଏହା ସତ୍ୟ, ଏ ପର୍ଯ୍ୟନ୍ତ ମଧ୍ୟ ଏଇ ଭ୍ରାନ୍ତିର ଅନ୍ଧଧାରା ବିଲୟ ଭଜିନାହିଁ, ଉଡ଼ଲୋଇ ବା କାଳିଆବୋଦା ତା'ର ପ୍ରମାଣ ଦଉଚି । ତା' ଭିତରେ ବାବାଜୀ ବିଭିନ୍ନ ଚିତ୍ରର, ପ୍ରତିଟି ଚିତ୍ର ହୁଏତ ସ୍ୱତନ୍ତ୍ର । ଆଧୁନିକତା ଏଥିରେ ଫୁଟିଚି—ଅଥଚ ବାବାଜୀ ଚରିତ୍ର ତା'ରି ଭିତରେ ଐକ୍ୟସୂତ୍ର, ସଂହତି ସୂତ୍ର ।

(ଖ) ଅତି-ଭୌତିକତା ତଥା ଭକ୍ତ୍ୟନ୍ଧତାର ସମର୍ଥନ ରହିଚି କାଞ୍ଚିକାବେରୀରେ । ଅଥଚ ତା ବାସ୍ତବତାର ପରିପ୍ରେକ୍ଷିରେ ଅବାସ୍ତବ, ଅବାନ୍ତର । ଯୁଦ୍ଧ ଘଟଣା ଐତିହାସିକ । ଆଜି ଭଳି ବାସ୍ତବତାର—ସ୍ୱାଭାବିକତାର ପରିବେଶ ଭିତରେଇ ନିଶ୍ଚୟ ହୋଇଚି । ମହାପ୍ରୁଆର ଜଗନ୍ନାଥଙ୍କର ଏଡେଶ କିଂବା ମଧ୍ୟସ୍ଥ ହବା ଦ୍ୱାରା ଜାତୀୟ ଗୌରବ ବା ବୀରତ୍ୱ—ପ୍ରତିଷ୍ଠା ଆଦୌ ବଢ଼ି ନାହିଁ । ଠାକୁର ଦୁହେଁ କଳା ଧଳା ଘୋଡ଼ାସବାର ସୈନ୍ୟ ହୋଇ କାଞ୍ଚିଯୁଦ୍ଧ ଜୟ କରିଥିବା—ବିଶ୍ୱାସ କରିଥିବା ଆମ ଜାତି, ସେ ଦୁହେଁ ଭକ୍ତ ପ୍ରତାପରୁଦ୍ରଙ୍କର ପତନୋନ୍ମୁଖୀ ରାଜ୍ୟ ରକ୍ଷା କରି ନ ପାରିବାର ଔଦାସ୍ୟ ତ ବିଚାରି ପାରେ ନା । ଚୈତନ୍ୟଙ୍କ ମୁଣ୍ଡରେ ସବୁ ଦୋଷ ଲଦାଯାଏ । ମାଣିକୀ ଗଉଡୁଣୀଠାରୁ ବଳଦେବଙ୍କର ମୁଦି ଚିହ୍ନି ମହାପ୍ରୁଆରର ସମସ୍ତ ବିବରଣୀ ପନାଇବାବେ ସେ କହିଚି ଯେ ଜଗନ୍ନାଥଙ୍କ ଧାଈ ଯଶୋଦା;

ସେଇ ସୈନ୍ୟରୂପୀ ଜଗନ୍ନାଥ ଦହିମୂଲ ଦବାକୁ ମନାକଲେ...ଇତ୍ୟାଦି। ମହାସୁଆର ତା'ର ଅର୍ଥ ବେଶ୍ ବୁଝାଇ ଦଉଚନ୍ତି। ମାଣକୀର ପିତା ବୃଷଭ ବେହେରାର ଆଗମନରେ ରାଧା ପିତା ବୃଷଭାନୁର ନାମ ସାମ୍ୟ ରଖା ଯାଇଚି। ଜଗନ୍ନାଥଙ୍କଠାରେ 'ହଟିଆ' କୃଷ୍ଣଙ୍କର 'ମାହାଳିଆ' ଦହି ଖାଇବା ସ୍ୱଭାବ, ମାଣିକୀଠାରେ ରାଧାଙ୍କର ଅଂଶବତାରତ୍ୱ ସୂଚନା ଦେଖାଇବା ଏ ଜାତି ସଂସ୍କୃତିରେ ନୂଆ ଓ ଅଦ୍ଭୁତ କଥା। ଗୌଡ଼ୀୟ ବୈଷ୍ଣବୀୟ କଳ୍ପନାର ଆଧାରିତ ହେଇ ମଧ ବହିର୍ଭୂତ। ରଙ୍ଗଲାଲ ବାନୁର୍ଜୀଙ୍କର 'କାଞ୍ଚୀକାବେରୀ' କାବ୍ୟାବଲଂବରେ ଏ ନାଟକ ଲେଖିଥିବାରୁ ଏ ଅଦ୍ଭୁତ କଳ୍ପନା ସେଠୁ ପାଇ ପାରିଥାନ୍ତି, ନଚେତ୍ "ନିଜ ମନରୁ ବାଇଗଣ ଅଙ୍କନ କର" ହେଇଥିବ।

ତେଣୁ, ଠାକୁରଙ୍କର ସ୍ୱପ୍ନାଦେଶରେ ଖାରବେଳ ଜାତିର ବୀରବାହିନୀ 'ନିମିତ୍ତମାତ୍ର' ହବା କିଂବା ଠାକୁର ଯୁଦ୍ଧରେ ବୀରନାୟକ ପୁରୁଷୋତ୍ତମଙ୍କର ପ୍ରୋକ୍ସି (Proxy) ଦବାରେ ପୁରୁଷୋତ୍ତମ ତଥା ଓଡ଼ିଆ ଜାତିର ଶୌର୍ଯମହତ୍ୱ କ୍ଷୁଣ୍ଣ ହେଉଚି, ଆଶ୍ରିତଭାବ ବଢ଼ିଚି ଏବଂ ଠାକୁରଙ୍କର ଶରଣବତ୍ସଳ ବାନା ପୁରୀ ସମୁଦ୍ର ହାଉଆରେ ଅଧିକ ଫରଫର ଉଡ଼ିଚି। କିନ୍ତୁ ଆମ ବୀର ଓଡ଼ିଆଙ୍କର ବୀରତ୍ୱ ରହିଲା ନାହିଁ?

କହିବାର କଥା, ଏ ଅତିଲୌକିକ କଳ୍ପନାରେ ଭକ୍ତ୍ୟନ୍ଧତାର ସମର୍ଥନ ଓ ଜାବୁଡ଼ି ଧରିବାର ଭାବ ଛଡ଼ା କ'ଣ ଅଛି? ସାହିତ୍ୟର ବାସ୍ତବଧର୍ମିତାରେ ସମାଜର ଅସଲ, ସ୍ୱାଭାବିକ ଓ ଜୈବନିକ ପରିଚୟକୁ ଏଠି ଅସ୍ୱୀକାର କରାଯାଉଚି। ତେଣୁ ସାହିତ୍ୟର ଏବଂ ଜାତିର ମର୍ଯାଦା କ୍ଷୁଣ୍ଣ ହେଉଚି।

ଏ ପକ୍ଷରେ ସଂକ୍ଷେପରେ କୁହାଯାଇପାରେ, ବାବାଜୀ କାଞ୍ଚୀକାବେରୀ ପରି ବସ୍ତୁବନ୍ତ ନ ହେଲେ ବି ଏଇ ଆଲୋଚିତ ଦୃଷ୍ଟିରୁ ସ୍ୱାଭାବିକ, ବାସ୍ତବିକ। ସମାଜ-ମାନସରେ କାଳ କାଳ ସଂଚିତ ଓ ପ୍ରତିଷ୍ଠିତ ଅତିଲୌକିକତା ବା ମହିମାବିଶ୍ୱାସର ଅସ୍ୱୀକାର କରାଯାଇଚି ବୈଜ୍ଞାନିକ, ଯୌକ୍ତିକ ଏବଂ ପ୍ରାମାଣିକ ଭଙ୍ଗିରେ। ଜାକିଜାବୁଡ଼ି ଧରିବା ଭାବକୁ ପିଙ୍ଗି ଦେଇ ସ୍ୱଚ୍ଛ ସମାଜ-ମାନସର ନବୀକରଣର ପ୍ରୟାସ କରାଯାଇଚି।

ଦୃଷ୍ଟାନ୍ତଟିଏ ଦଉଚି। ଜେମୀ ତା'ର ରୋଗିଣୀ ସଙ୍ଗିନୀ ରାଧୀର 'ବେରାମ' ମହିମାବଳରେ ଭଲ କରାଇବାକୁ ବାବାଜୀଙ୍କର ନଦୀକୂଳସ୍ଥ ଆସ୍ଥାନକୁ ଆସି ପ୍ରାର୍ଥନା କରିଚି। ବାବାଜୀ ମହିମାମୟ ହବା ଅସ୍ୱୀକାର କରନ୍ତେ, ସେ କହୁଚି,—"ଆପଣ ତ ଆମ ପରି ମନୁଷ୍ୟ ନୁହନ୍ତି, ଆପଣ ସିଦ୍ଧ ପୁରୁଷ, ସାଧୁ। ଆପଣଙ୍କ ପରି ସାଧୁଙ୍କର କରଣୀ କାଟେ।"

ବାବାଜୀ—"ଆମେ କି ସିଦ୍ଧପୁରୁଷ, ଆମେ କି ସାଧୁ। କେହି ସିଦ୍ଧ ପୁରୁଷ ହେଲେ ମଧ ତାହାର ଅଲୌକିକ ମହିମା କିପରି ହବ?"

ତା' ପରେ ଜେମୀ ଜନରବ-ଶ୍ରୁତ ତାଙ୍କର ମହିମାର ସଫେଇ ଦଉଚି—"ମହାରାଜ। ଆପଣ ଆଜି ସୁବଳବାବୁଙ୍କ ବସାକୁ ଯାଇଥିଲେ...। ତାଙ୍କ ପୂଝାରୀ ଦୁଷ୍ଟ ଓ

ଗୁଣୀ ଅଟେ, ସେ ଆପଣଙ୍କୁ ବିଦ୍ଧିବା ପାଇଁ ଗୋଟିଏ ହାଣ୍ଡିରେ ରନ୍ଧା ମାଂସ ପୂରେଇ ପଲମ ଘୋଡ଼େଇ ଆପଣଙ୍କୁ ଆଣିଦେଲା ଓ କହିଲା ଏଥିରେ ପ୍ରସାଦ ଅଛି ସେବା କରନ୍ତୁ। ଆପଣ ତ ସର୍ବଜ୍ଞ, ତାହା ଜାଣିପାରି କହିଲେ, ଏଥିରେ ଯାହା ଅଛି ତାହା ଆମ ଖାଇବାର ନୁହେଁ; ତାହା ତୋତେ ଖାଇବ। ଏହା କହି ପଲମ ଢାକି ଦିଅନ୍ତେ ସେଥିରୁ କେଡ଼େ ବଡ଼ କୁକୁଡ଼ାଟାଏ ବାହାରି ପୂଝାରୀକୁ ଏପରି ଖୁମ୍ପିଲା ଯେ ସେ ଛଟପଟ ହୋଇ ରଡ଼ି ଛାଡ଼ିଲା। ତାହାର ମନ୍ତ୍ର ଯନ୍ତ୍ର କିଛି କାଟିଲା ନାହିଁ। ସେ ଯହୁଁ ଦୋଷ ମାନି ଆପଣା ଗାଲରେ ଚଟକଣା ଖାଇଲା। ତହୁଁ ଆପଣ ତାକୁ କଲ୍ୟାଣ କଲ, ସେ ଥୟ ହେଲା, କୁକୁଡ଼ା କୁଆଡ଼େ ଉଭେଇ ଗଲା।

ବାବାଜୀ–(ଉଚ୍ଚସ୍ୱରରେ ହସି) "ମିଛ, ମିଛ, କିଏ ଏହା କହିଲା ?"

ଜେମୀ–"ନା ମହାରାଜ। ମିଛି କିପରି, ଆମେ କେତେ ଲୋକଙ୍କଠାରୁ ଶୁଣିଥିଲୁଁ, ଏ କଥା ରାଇଜଯାକ ରଟିଗଲାଣି, ଆପଣ ଲୁଚେଇଲେ କି ଲୁଚିବ।..."

ବାବାଜୀ–"ଉଠ, ଉଠ, ଆମେ କପଟ କରୁନାହୁଁ; ସତ କହୁଚୁ ଶୁଣ।"

ଯା ପରେ ସେ ଏ ସମସ୍ତ ଅତିଭୌତିକତା ଓ ମହିମାର ଜନରବଟି ବିଶ୍ଳେଷଣରେ ଦେଖେଇଚନ୍ତି। ତା ସତ୍ୟତ, ଘଟଣାରେ ନାହିଁ; ଅଛି ଲୋକଙ୍କର କଳ୍ପନାରେ, ଚିରାଚରିତ ନିର୍ବୋଧ ବିଶ୍ୱାସରେ। ଏଠି, ପୂଝାରୀର ଟାହୁଲି–"ଆପଣଙ୍କ ମହିମାରେ ମଲା କୁକୁଡ଼ା ବଞ୍ଚି ଉଠିଲା"ରୁ। ତା ଛଡ଼ା ସେ ବୁଝାଇଛନ୍ତି ସିଦ୍ଧ ପୁରୁଷ ନାମର ବାହାନା କରି ଶଠ ସାଧୁମାନେ ଜୀବିକା ଓ ପ୍ରତିଷ୍ଠା ପାଇଁ କିପରି ନାନା କପଟାଚାର କରନ୍ତି, କୌଶଳ କରନ୍ତି। ଭୂତ, ଚିରଗୁଣୀ ବିଷୟରେ ବାବାଜୀ କହିଚନ୍ତି–"ବାସ୍ତବରେ ଭୂତ, ଡାଆଣୀ ଇତ୍ୟାଦି କିଛି ନାହିଁ। କୁସଂସ୍କାର ହେତୁ ସେପରି ଭ୍ରମଯୁକ୍ତ ବିଶ୍ୱାସ ଥିବାରୁ ଭୟ ହୁଏ; ସେହି ଭୟଟି ଭୂତ। 'ନିଜ ଗାଁ ମଶାଣି, ପରଗାଁ ନଈକୁ ଭୟ ହୁଏ।' ପରଗାଁ ମଶାଣିରେ ଶୋଇ ରହିଲେ ମଧ ଭୂତ ଲାଗେ ନା। କାରଣ ତାହା ଜଣା ନ ଥିବାରୁ ଭୟ ହୁଏ ନା।"

ସେଇଭଳି, ଶିବ ଓ ଜେମସ୍‌କୁ ବୁଝାଇଚନ୍ତି,–"ନିର୍ବୋଧତାର ସୁଯୋଗ ନେଇ ଠକ ସାଧୁମାନେ" କିପରି ଛଳନା କରନ୍ତି।

ବାବାଜୀ ପ୍ରାୟ ୬୦ ପୃଷ୍ଠାର କ୍ଷୁଦ୍ରବପୁ ହେଲେ ହେଁ ନାଟକୋଚିତ ବାସ୍ତବଧର୍ମୀ; ଏଇ ପରିପ୍ରେକ୍ଷିରେ, ଅତି ଭୌତିକତା-ଅବାସ୍ତବତାର ଅଭାବରୁ ତାହା ଏବେ କେତେବର୍ଷ ଭିତରେ ରଚିତ ଅତିବଡ଼ୀ ଜଗନ୍ନାଥ ଦାସ, ଅଭିଯାନ, ଜୟଦେବ, ବନ୍ଧୁମାହାନ୍ତି, ଭଞ୍ଜକବି ପ୍ରଭୃତି ଅପେକ୍ଷା ଆଧୁନିକତର, ଆଧୁନିକ ଭଙ୍ଗୀର। ବସ୍ତୁତ ଏ ନାଟକଗୁଡ଼ିକ ଅସମାଜିକ, ଅବାସ୍ତବ, ଅସ୍ୱାଭାବିକ ତଥା ଅନାନ୍ତରିକ। ଯେପରି,–ଯେଉଁ ଜଗନ୍ନାଥ ଦାସ ଐତିହାସିକ ପୁରୁଷ, ଦାର୍ଶନିକ-କବି;–ସତ୍ୟ, ସାମାଜିକ, ପ୍ରତିଭାଶାଳୀ ବ୍ୟକ୍ତି, ତାଙ୍କୁ ରାଧାଙ୍କ ହାସ୍ୟାବତାର କରି ହାସ୍ୟାସ୍ପଦ ଚରିତ୍ରବିଶେଷ କରାଯାଇଚି ଏବଂ

ମେଧା-ସୁମେଧା-ସହଚରୀ 'ନାରୀ' କରି ଜାତୀୟ ଗୌରବ ଏବଂ କବିଙ୍କର ବୈୟକ୍ତିକ ପ୍ରତିଭା ତଥା ପ୍ରତିଷ୍ଠା ନଷ୍ଟ କରାଯାଇଛି। ବିଚାର ଭିତ୍ତିରେ ସେ ନାଟକ ହିଁ ଜାତୀୟ ପୁରୁଷ ହିସାବରେ ଜଗନ୍ନାଥ ଦାସଙ୍କୁ ଏକାନ୍ତ ଅପମାନ। ଅନ୍ୟ ନାଟକଗୁଡ଼ିକରେ, ଏଇଭଳି ଲଣାଅଧିକେ ଅତିଭୌତିକ ପରିବେଶଗତ ତ୍ରୁଟି ପୂରି ରହିଚି। ଐତିହାସିକତା ଅପେକ୍ଷା ଅନ୍ଧ କିଂବଦନ୍ତୀର ଓ ଭାକ୍ତିକତା ବେଶି। ଏ ସମସ୍ତ ନୈତିକ ଅଧଃପତନଶୀଳ ମଧ୍ୟଯୁଗର ଅନୁରୂପ ଲକ୍ଷଣ। ଆଧୁନିକ କାଳର ଏ ରୁଚି ନୁହେଁ। ହବା କଥା ନୁହେଁ।

(ଗ) **ଚରିତ୍ରଃ**—ଚରିତ୍ରବାହୁଲ୍ୟ, ବସ୍ତୁତ, ବାବାଜୀରେ ନାହିଁ। ବାବାଜୀ, ନାୟକ; ଦୁଷ୍ଟ ଓ ଗୁଣୀ (?) ପୂଝାରୀ ଆନନ୍ଦ ପଣ୍ଡା ପ୍ରତିନାୟକ। ପ୍ରଥମେ ଏ ବାବାଜୀଙ୍କ ପ୍ରତି କୁ-ବ୍ୟବହାର ଦେଖାଇ, ପରେ ଅନୁତାପ କରିଚି ଏବଂ ନିଜେ ଜୀବିକା ପାଇଁ ଗୁଣୀଗାରୁଡ଼ିରେ କିପରି ଛଳନା କରେ ବତେଇଚି। ରନ୍ଧାମାଂସ ଜୀଅନ୍ତା କୁକୁଡ଼ା ହବା ମିଥ୍ୟା ରଟନାରେ ବାବାଜୀଙ୍କର ମହିମା ପ୍ରଚାର କରିଚି। ଏ ଦୁଇଟି ଚରିତ୍ର ମୁଖ୍ୟ। ରାଧୀ, ଜେମୀ, ଶିବ, ଜେମସ୍, ସୁବଳ ବାବୁ ଓ ବୀର ସିଂହ ମଧ୍ୟମ ଚରିତ୍ର। ଅନ୍ଧବିଶ୍ୱାସ ଓ ମହିମାବିଶ୍ୱାସ ସହିତ ସତ୍ୟ ପ୍ରକାଶ ତଥା ତଥ୍ୟ ପ୍ରକାଶର ସଂଘର୍ଷ ଓ ସମାଧାନ ପ୍ରଥମ ଚାରିଜଣଙ୍କଠାରେ ହେଇଚି। ସଂଘର୍ଷ, ତୀବ୍ର, ରକ୍ତସ୍ପୃଷ୍ଟ ବା ନାଟକୀୟ ନୁହେଁ। ବରଂ ଷ୍ଟେଜ୍-ସୁଲଭ। ତା'ଛଡ଼ା, ରଘୁ, ଚାକର ରାମା, ଯଶୁ ଭଟ୍ଟାଚାର୍ଯ୍ୟ ଅଧମ ଚରିତ୍ର—ଗୌଣ ଓ ଅତି ସଂକ୍ଷିପ୍ତ। କିନ୍ତୁ ଅତି ସଂକ୍ଷିପ୍ତ ହେଲେହେଁ ମାଳତୀ, ଜାମୁନୀ ଓ ମହନ୍ତ ଚରିତ୍ର, ମୁଖ୍ୟ ନ ହୋଇ ସୁଦ୍ଧା, ଉଦ୍ଦେଶ୍ୟମୂଳକ, ବିଦ୍ରୂପବିଦ୍ଧ।

ସୁବଳ ବାବୁ, ବୀରସିଂହ ବା ମଠର ମାଳତୀ, ଜାମୁନୀ, ମହନ୍ତ ପ୍ରଭୃତି କେତେକ ଚରିତ୍ର ନାଟକର ଆମୂଳଚୂଳ ନାହାନ୍ତି। ଅଛନ୍ତି ସ୍ଥଳବିଶେଷରେ। ଏ ଦୃଷ୍ଟିରୁ ନାଟକର ସମଗ୍ର କ୍ରିୟାତ୍ମକତା (action) ପୂର୍ଣତାର ତୃପ୍ତି ଦବାପରି ଆପାତତ ଜଣା ନ ଗଲେ ବି, ସ୍ୱଭାବଧର୍ମୀ। ଯେପରି ଜଣେ ଯାତ୍ରୀ ତା'ର ଯାତ୍ରାପଥରେ ବିଭିନ୍ନ ଦୃଶ୍ୟ ଅତିକ୍ରମ କରେ, ଦେଖେ। ପ୍ରତ୍ୟେକ ଦୃଶ୍ୟର ପୁନରାବୃତ୍ତି ଘଟେ ନାହିଁ। ଯଦି ପରିଧି କ୍ରମରେ ଫେରିଆସେ, ଆରମ୍ଭ ଦୃଶ୍ୟରେ ପହଞ୍ଚି କେବଳ ତାକୁଇ ଦ୍ୱିତୀୟ ଥର ଦେଖିପାରେ। ସେଇପରି, ବାବାଜୀ ପୂଝାରୀକୁ ପ୍ରଥମରେ ଓ ଶେଷରେ ଭେଟିଚନ୍ତି। ପକ୍ଷାନ୍ତରରେ ଗୋଟାଏ ପରିସ୍ଥିତିକୁ ବିଭିନ୍ନ ଅବସ୍ଥା ଅତିକ୍ରମ କରି ଯାଉଚନ୍ତି। ବାବାଜୀଙ୍କୁ କେନ୍ଦ୍ର କରି ବିଭିନ୍ନ ଅବସ୍ଥା ପରିସ୍ଥିତି, ଧାରଣା ଓ ବ୍ୟକ୍ତି ଭେଟିଚନ୍ତି। ବ୍ୟାପ୍ତିରେ, ଜୀବନଧାରାର ଏହାଇ ଗତି।

ଆଧୁନିକ ପାଶ୍ଚାତ୍ୟ ନାଟକରେ ବି ଦେଖାଯିବ—ହୁଏତ ଗୋଟାଏ ଚରିତ୍ରକୁ ଅତିକ୍ରମ କରି ବିଭିନ୍ନ ପରିସ୍ଥିତି ବା ଦୃଶ୍ୟ ବଦଳି ଯାଇଥିବ; କେଉଁ ଦୃଶ୍ୟ ଅତି ସଂକ୍ଷିପ୍ତ; କେଉଁ ଦୃଶ୍ୟ ଖୁବ୍ ଦୀର୍ଘ; କେଉଁଠି ବା ଗୋଟିଏ ଦୃଶ୍ୟରେ ଚରିତ୍ର ପରେ ଚରିତ୍ର ଆସି ଚାଲିଯାଉଛନ୍ତି ଅଥଚ ଦୃଶ୍ୟଟି ଅବିକଳ ରହିଚି। ଧରାଯାଉ,

ଯେମିତି ଗୋଧୂଳିକାଳର ଗୋଟିଏ ସୁବିଧାଜନକ ନାମୀ ରେଷ୍ଟୋରା। ଏଠି ଏକମାତ୍ର ନିଶାଣ ତଥା ଲକ୍ଷଣ ବାସ୍ତବତା। ଏ ବିଚାର ଭିତ୍ତିରେ ବାବାଜୀ ବାସ୍ତବଧର୍ମୀ ଏବଂ ଆଧୁନିକ ଚରିତ୍ରଗୁଡ଼ିକ ସଂକ୍ଷିପ୍ତ ହେଲେ ବି ସତ୍ୟ ଓ ଜୀବନ୍ତ। ପରିପାଟୀରେ ଅସ୍ୱାଭାବିକ ରଙ୍ଗରଞ୍ଜିତ ନୁହନ୍ତି।

ବାହୁଲ୍ୟ ଭୟରୁ କାଞ୍ଚୀକାବେରୀ ଚରିତ୍ର ବିଚାର ସବିଶେଷ କରି ହଉନାହିଁ। ସଂକ୍ଷିପ୍ତ ଦୃଷ୍ଟାନ୍ତ ଦିଆଯାଇପାରେ—ନାୟକ ପୁରୁଷୋତ୍ତମ ଜଣେ 'ନିମିତ୍ତ ମାତ୍ର ଭବ ସବ୍ୟସାଚି' ଭକ୍ତ—ଯୁଦ୍ଧକୁ ଯାଉଚନ୍ତି, କାର୍ଯ୍ୟତ ଯୋଦ୍ଧା ନୁହନ୍ତି। ପ୍ରେମିକ, ଅଥଚ ଅଜସ୍ର ରକ୍ତପାତ—ଶୁଳ୍କ ପ୍ରେମିକାକୁ ଚାଣ୍ଡାଳ ହସ୍ତରେ ସମର୍ପି ଦବାକୁ ପ୍ରତିଜ୍ଞାବଦ୍ଧ। ପ୍ରତିଜ୍ଞାବଦ୍ଧ, ଅଥଚ ମନ୍ତ୍ରୀଙ୍କ କୌଶଳରେ ଚାଣ୍ଡାଳ ଭୂମିକାରେ ତାଙ୍କୁ ଗ୍ରହଣ କରିଚନ୍ତି। ଏଠି ଇତିହାସ ଅପେକ୍ଷା କିମ୍ବଦନ୍ତୀର ପୁରୁଷୋତ୍ତମ ବେଶି। ମାଣିକୀଭେଟ ସତେ ଯେମିତି ମାତ୍ର-କେତେ-ଶହ ବର୍ଷ ତଳର ନୁହେଁ—ଦ୍ୱାପରଯୁଗର ରୂପାନ୍ତରରେ। ମହାପ୍ରଭୁଆର ତ ଜଗନ୍ନାଥଙ୍କର ଏଜେଣ୍ଟ୍ ଓରଫ ମଧ୍ୟସ୍ଥ। କାଞ୍ଚୀରାଜା କନ୍ୟା ବିରହରେ ପୁରୁଷୋତ୍ତମଙ୍କର ଶରଣାକାଙ୍କ୍ଷୀ। କାଞ୍ଚୀରାଣୀ କାନ୍ଦି ରାଜ୍ୟ ଛାଡ଼ି ରାଜାଙ୍କ ସହିତ ଏଠି ହାଜର। ଐତିହାସିକ, ତତ୍କାଳୀନ ସମାଜ-ସ୍ୱଭାବରେ ଏହା ଅବିଶ୍ୱାସ, ଅଘଟିତ। ପରନ୍ତୁ ଭାବପ୍ରବଣ ଚିତ୍ରଣ। କିମତଃପରଂ।

ଚରିତ୍ର ସଂଖ୍ୟାରେ ବାବାଜୀର ପ୍ରାୟ ଚଉଦଟିର ପ୍ରୟୋଜନ ସ୍ଥଳେ, କାଞ୍ଚୀକାବେରୀରେ ତା'ର ପ୍ରାୟ ଦ୍ୱିଗୁଣାଧିକ।

(ଘ) **ଗୀତି ପ୍ରଯୋଜନା** :—ଏ ସମ୍ପର୍କରେ ଭରତ ମୁନିଙ୍କର ଗୋଟିଏ ନିର୍ଦ୍ଦେଶ ହଉଚି—

> ଗୀତେଷ୍ଟୁ ଯତ୍ନଃ ପ୍ରଥମଂ ତୁ କାର୍ଯ୍ୟ
> ଶଯ୍ୟା ହି ନାଟସ୍ୟ ବଦନ୍ତି ଗୀତମ୍।
> ଗୀତେ ଚ ବାଦ୍ୟେ ଚ ହି ସଂପ୍ରଯୁକ୍ତେ
> ନାଟ୍ୟସ୍ୟ ଯୋଗୋ ନ ବିପତ୍ତିମେତି।

ସଂସ୍କୃତ ନାଟ୍ୟକାରମାନେ ଯା ମାନି ଆସିଚନ୍ତି। ତେଣୁ ସଂସ୍କୃତ ନାଟକରେ ଶ୍ଳୋକବାହୁଲ୍ୟ। କାଞ୍ଚୀକାବେରୀରେ ରାମଶଙ୍କର ଏଇ ଏଇ ଅନୁସୃତିରେ ବହୁଳ ଗୀତ ଦେଇଚନ୍ତି। ଲାଲ ମହାଶୟ ଏ ନିର୍ଦ୍ଦେଶ ନ ମାନି ମୁକ୍ତ ମନରେ ତିନୋଟି ମାତ୍ର ଭଜନ ସନ୍ନିବେଶ କରିଚନ୍ତି। ଆଜିକାଲି ଗୀତ ନ ଥାଇ ମଧ୍ୟ ନାଟକ ସଫଳ ହେଇପାରୁଚି। ଏ ଦୃଷ୍ଟିରେ, ବାବାଜୀରେ ଗୀତି ଯଥା-ପରିମିତ। ଆଗରୁ ଏ ବିଷୟ ସୂଚେଇ ଦିଆଯାଇଚି।

(ଙ) **ଭାଷା ଓ ସଂଳାପ**:—ସଂସ୍କୃତ ନାଟକରେ ସଂସ୍କୃତ ଏବଂ ବିଭିନ୍ନ ପ୍ରାକୃତରେ ବିଭିନ୍ନ ଶ୍ରେଣୀର ପାତ୍ର ସଂଳାପ କରିଥାନ୍ତି। ଏହାର ମୂଳ ଉଦ୍ଦେଶ୍ୟ,

ଚରିତ୍ର ପ୍ରକାଶରେ, ଚଳଣିରେ ବାସ୍ତବତାର ଧାରଣା ଦବା । ସଂସ୍କୃତ ନାଟ୍ୟସାହିତ୍ୟ-ଶାସ୍ତ୍ରୀ ଧନଞ୍ଜୟଙ୍କର ବିଶିଷ୍ଟ ଉକ୍ତି 'ଅବସ୍ଥାନୁକୃତିର୍ନାଟ୍ୟମ୍'ର ଅନୁବର୍ତୀ ହେବାରେ 'ବାବାଜୀ' ପ୍ରଣିଧାନଯୋଗ୍ୟ । କାଞ୍ଚିକାବେରୀ ସଂଳାପ ସୁନ୍ଦର ହେଲେ ହେଁ ବାବାଜୀ ଅପେକ୍ଷା ଅଧିକାଂଶ ସ୍ଥଳରେ ଅଧିକତର ସାହିତ୍ୟିକ । ବାବାଜୀର ଭାଷା-ବିଚାରରେ ଗୌରୀଶଙ୍କରଙ୍କର ମନ୍ତବ୍ୟ ପ୍ରଣିଧାନଯୋଗ୍ୟ,—''ନାଟକର ଭାଷା ଓ ରଚନାଭଙ୍ଗୀ କି ପ୍ରକାର ହେବ ଏସବୁ ଅତି ଚମତ୍କାର ରୂପେ ଗ୍ରନ୍ଥକର୍ତ୍ତା ଦେଖାଇଅଛନ୍ତି ।'' ବାବାଜୀର ଭାଷା ତ ସରଳ; ପ୍ରତି ଚରିତ୍ର ମୁଖରେ ତା'ର ଉପଯୋଗୀ ଭାଷା । ତା ଛଡ଼ା ସଂଳାପ ବାହୁଲ୍ୟ ଥିଲେହେଁ କାଞ୍ଚିକାବେରୀ ତୁଳନାରେ କମ । ଆଗରୁ କୁହାଯାଇଚି, କାଞ୍ଚିକାବେରୀରେ ଅତି ଦୀର୍ଘ ଓ ସାଧୁକୃତ ଭାଷାର ସଂଳାପ ତ ରହିଚି ଏବଂ ସେଠି ପୁଣି ଗଦ୍ୟ ରୂପରେ କହୁଁ କହୁଁ ହଠାତ୍ ଅମିତ୍ରାକ୍ଷର ଛନ୍ଦରେ କଥାର ପୁନରାରମ୍ଭ ହେଇଚି । ଯଥା—ତୃତୀୟ ଅଭିନୟରେ ଉତ୍କଳ-ଦୂତର ''ଏ ରାଜାଙ୍କ ନିତାନ୍ତ ଉଦ୍ଧତ'' ଠାରୁ ''ଚଣ୍ଡାଳ ହସ୍ତରେ ନିକ୍ଷେପିବେ ପଦ୍ମାବତୀ'' ପର୍ଯ୍ୟନ୍ତ । ପଞ୍ଚମ ଅଭିନୟର ଦ୍ୱିତୀୟ ଦୃଶ୍ୟରେ ରାଜାଙ୍କର ''ଓଃ ! କି ଦୁର୍ଦ୍ଦୈବ'' ଠାରୁ ''କି ମଧୁର ତାନ'', କିମ୍ବା ମନ୍ତ୍ରୀଙ୍କର ''ମହାରାଜ ! କ୍ଷମା କରନ୍ତୁ'' ଠାରୁ ''ଦେବ ପଦେ ନିବେଦିତା'' ପର୍ଯ୍ୟନ୍ତ । ଆଧୁନିକ ଦୃଷ୍ଟିରେ ଯା ବରଂ ଯାତ୍ରାଳିଆ ଅନ୍ତତ ଥ୍ୟେଟ୍ରିକାଲ । ବାବାଜୀରେ ଏ ତ୍ରୁଟି ନାହିଁ । ତହିଁରେ ଚରିତ୍ରମୁଖରେ ଯଥାଭାଷାରେ ସଂଳାପ ଯଥାରୀତି ଫୁଟିଚି । ଯଥା—ସୁବଳ ବାବୁ କହୁଛନ୍ତି, ''ନା ନା ମହାରାଜ, ନିଶା ଏପରି ମନ୍ଦ ନୁହେଁ ସେଥିରେ ନାନା ଗୁଣ ଦୁର୍ଗୁଣ ଦୁହେଁ ଅଛନ୍ତି । ଅଧିକ ଖାଇବାର ଅବଶ୍ୟ ଦୋଷ, କେବେ କେବେ ଅଳ୍ପ ଖାଇଲେ କିଛି ଦୋଷ ନାହିଁ । ବରଂ ଭଲ ହୁଏ । ମନ ମଗ୍ନ ହୋଇ ରହେ... ।''

ଯଶୁ ଭଟ୍ଟାଚାର୍ଯ୍ୟଙ୍କୁ ସୁବଳ ବାବୁ ବଙ୍ଗଳାରେ କହୁଚନ୍ତି । କାରଣ ଓଡ଼ିଶାରେ ରହିଲେ ମଧ୍ୟ ବଙ୍ଗାଳୀମାନେ ଓଡ଼ିଆ ବୁଝି ପାରନ୍ତି ନାହିଁ । ସେ କହୁଚନ୍ତି— ''ଏଇ ବାବାଜୀ ବେଶ୍ ଭଜନ କର୍ତ୍ତେନ । ଓର୍ ଆହାରେର୍ ଯୋଗାଡ଼ ହତେ ଏର ମଧେ ଗାନ୍ କରାଯାକ୍ । ଆପନି ବାଜାବେନ୍, ଉନି ଗାଇବେନ୍ । ଇରେ, ରାମା ! ତମୋଖୁ ଆଣ୍, 'ତବଲା ଦେ ।' ଏଇ ଶେଷ ବାକ୍ୟଟି ତାଙ୍କର ରାମାପାଇଁ । ବଙ୍ଗଳା ସହିତ ଓଡ଼ିଆ ପଦକ ଏଇ ସ୍ଥଳରେ ସ୍ୱାଭାବିକ ହେଇଚି ।

ଇଂରେଜି ଶିକ୍ଷାର ପ୍ରଭାବ । ଜେମସ୍ ଆଉ ଶିବ । ଜେମସ୍ ବୋଧହୁଏ ନଅଙ୍କ ପରିଣାମରେ ଖ୍ରୀଷ୍ଟିଆନ ଏବଂ ଶିବ ସ୍ଖଳିତ ଓ ଉଚ୍ଛୃଙ୍ଖଳ ମଦ୍ୟପ । ଜେମ୍‌ସ କହୁଚି—''ରାଧୀ ଜେମୀ ଦୁହିଁକୁ ଆଣିବା, ଜଣକେ କିଛି ଜମିବ ନାହିଁ ନା ମଜା ହବ ନାହିଁ । country ଓ exshaw ଏ ଦୁଇ ରକମ ଆଣିବାକୁ ହବ । ଏ ସବୁ ନ ହେଲେ କିଛି ମଜା ହବ ନାହିଁ ।''

ଶିବ—"ତା ନ ହେଲେ ଆଉ କ'ଣ ହବ। Wine and women are the two things in the world, Ah! —ଆରେ! ଆଜି ଜେମୀ ରାଧୀର ଗାଉଣା ହବାର ଥିଲା, ଏଠାକୁ ଆସିବାର ହବାରୁ ମନା କରି ପଠେଇଲି।"

ସେ ଦୁହିଁଙ୍କ ପୃଷ୍ଠଭୂମି ଦୃଷ୍ଟିରୁ ଏ ସଂଳାପ ସ୍ୱାଭାବିକ।

ଜାମୁନୀ ଗୌଡ଼ୀୟ ବୈଷ୍ଣବୀ; ମହନ୍ତଙ୍କ ସହିତ ବ୍ୟଭିଚାର ବା ପ୍ରେମ (ଯେଉଁଟା ହେଲେ ବୁଝ) ସଂପର୍କ ରଖିଚି। ବାବାଜୀଙ୍କୁ ଅନାହାରୀ ଦେଖି କହୁଚି—"ଛିଆକର! ଏଇଟାକୁ ବସି ପଚାରିବ? ଶୁଖିଲା ମୁହଁଟାଏ, ପ୍ରେମଭାଗ କିଛି ନାହିଁ।"

ବୀରସିଂହ—"ହଁ, ଝୋଲୀ ନାହିଁ; ପ୍ରେମ କାହୁଁ ଜାଣିବ।"

ଜାମୁନୀ—(ହସି ହସି) "ଦୁର୍! ତୋର ସବୁବେଳେ ଏଇକଥା ନ ଯାଏ। ତୋ ମୁହଁରେ ଯେବେ ପୋକ ନ ପଡ଼ିବ।"

ବୀର—"କି ପୋକ, ଝୋଲିର ପ୍ରେମପୋକ?

ଜାମୁନୀ—"କ'ଣ ପାପ କଥାଗୁଡ଼ାକ କହୁ। କୃଷ୍ଣ କୃଷ୍ଣ କୃଷ୍ଣ।"

ମଠର ସେବକ ବୀରସିଂହ ଅନେକତ ମୁକ୍ତମନା। ସେ ବ୍ୟଙ୍ଗ କଲେ ହେଁ ଜାମୁନୀର ଭର୍ତ୍ସନାରେ ପ୍ରେମାଭିଳାଷ ସୂଚିତ। ସଂଳାପଟି ସୁନ୍ଦର ଓ ଯଥାର୍ଥ ହୋଇଚି।

ଜେମସ୍ ଶିବକୁ ନିବର୍ତ୍ତାଇବାରେ, ଶିବ କହୁଛି—"ମଦଦ୍ରବ ସବୁ ଦୋଷ, drinkingର କିଛି ଦୋଷନାହିଁ। ଚାଲ୍ ବନ୍ଧ ଉପରକୁ ଚାଇ, ତେଣେ ଜଣେ ଅନେଇଲାଣି। ମଦ୍ୟ-ବନ୍ଧୁ ଶିବର ଆତ୍ମସମର୍ଥନ ବି ସ୍ୱାଭାବିକ।

ରାଧୀ ନଈ କୂଳର ଆମ୍ବତୋଟାକୁ ସନ୍ଧ୍ୟାରେ ଆସୁ ଆସୁ ଭୂତ ଭୟରେ ଅଚେତନ। ସଙ୍ଗିନୀ ଜେମୀ ବ୍ୟସ୍ତ ହଉଚି। ବାବାଜୀ ଥୟ ହବାକୁ କହିବାରେ ଜେମୀ କହୁଚି—(କାନ୍ଦି କାନ୍ଦି) କ'ଣ ଥୟ ହେବ ମହାରାଜ! ମତେ ତ ଚାରିଆଡ଼ୁ ଅନ୍ଧାର ଦୁଶିଗଲାଣି, ମହାରାଜ! ଏଗା ଡାହାଣୀ ଭୂତର ଜାଗା, ମୋ ରାଧୀ ତ ଅତି ସୁନ୍ଦରୀ ସୁକୁମାରୀ, ତାକୁ କାହାରି ଦୃଷ୍ଟି ହେଲା, କି ଭୂତ ମାଡ଼ି ବସିଚି, କି କିଛି ଭେଟଣା ହେଲେ ମୁଁ ତ କିଛି ଠିକଣା କରିପାରୁ ନାହିଁ। ତାକୁ ଘରକୁ ନେବି କେମନ୍ତେ ମତେ ବୁଦ୍ଧି ଦୁଶୁ ନାହିଁ। ମହାରାଜ! ତୁମ ଗୋଡ଼ତଳେ ପଡୁଚି ତୁମେ ମତେ ସାହା ହୁଅ।"

ଏଇଭଳି ଅନେକ ଦୃଷ୍ଟାନ୍ତ ଦିଆଯାଇପାରେ।

(ଚ) **ହାସ୍ୟରସ, ବ୍ୟଙ୍ଗ-ବିଦ୍ରୂପ:**—କାଞ୍ଚିକାବେରୀରେ କେବଳ ହାସ୍ୟରସ ପରିବେଷଣ ସଂସ୍କୃତରୀତି ରକ୍ଷାରେ ବିଦୂଷକର ସୃଷ୍ଟି ହେଇଚି। ତେଣୁ ଅନ୍ୟ ଚରିତ୍ର ଏଥିପାଇଁ କିଛି ସୁଯୋଗ ନ ପାଇବା ସମ୍ଭାବନା ବେଶି। କିନ୍ତୁ ବାବାଜୀରେ ହାସ୍ୟରସ, ବ୍ୟଙ୍ଗ ବିଦ୍ରୂପ—ସବୁ ଅଛି। ଜାନକୀବଲ୍ଲଭ କହିଚନ୍ତି, ବାବାଜୀର ହାସ୍ୟରସ ଶସ୍ତା, ଯାତ୍ରାକିଆ। ବାବାଜୀଙ୍କୁ ଖାଇବାକୁ ଦବା ଛଳରେ ଦୁଷ୍ଟ ଆନନ୍ଦ ପଣ୍ଡା ପଇମ

ଘୋଡ଼େଇ ଜୀଅନ୍ତା କୁକୁଡ଼ା ଦେଇଛି। ବାବାଜୀ ପଲମ ଟେକିଦବାରୁ କୁକୁଡ଼ା ଦେଖୁଚନ୍ତି। ଏଠି ହାସ୍ୟରସ ମଧୁର ନ ହେଲେ କର୍କଶ ହେଇଛି। ଯଶୁ ଓ ସୁବଳ ବାବୁ ମଦ ଖାଇ ମାତାଲ ହବାରେ ଏବଂ ସୁବଳବାବୁ ନାଚିବାରେ ଯେଉଁ ହାସ୍ୟର ଉଦ୍ରେକ କରାଯାଇଚି, ତା ଠିକ୍ ହାସ୍ୟରସ ନୁହେଁ। ନୈତିକ ଅଧଃପତନର ବିଭୀଷିକା। ବାବାଜୀଙ୍କ ସାମନାରେ କରୁଣ ଅନୁକମ୍ପାର ଏକ ନିପୀଡ଼ିତ ଛବି। ସଂସ୍କାରର ଧ୍ୱନି ଓ ସ୍ୱପ୍ନ।

ଯା ଛଡ଼ା, ଅନ୍ୟତ୍ର ହାସ୍ୟରସର ପରିବେଷଣ ଭିତରେ ବ୍ୟଙ୍ଗ ବିଦ୍ରୂପ ଭାବ ପ୍ରଚୁର, ତୀବ୍ର, ତଥା ଚମତ୍କାର। ଜାମୁନୀ ଓ ବୀରସିଂହଙ୍କ ସଂଳାପରେ ଏ ସୂଚନା ମିଳିବ। ଆଉ ଗୋଟିଏ ଦୃଷ୍ଟାନ୍ତ ଦଉଚି। ବୀରସିଂହ ବାବାଜୀଙ୍କ ଆଗମନ ଓ ଅନାହାର ବିଷୟ ମହନ୍ତଙ୍କୁ ଜଣାଇଚି। ମାତାଜୀ ସଂସର୍ଗାଭ୍ୟସ୍ତ ମହନ୍ତ ଆସିଲେ, ନିରାଶ ହେଲେ। କହୁଚନ୍ତି, (ବୀରପ୍ରତି) "ବାବାଜୀଟାଏ, ତୁ କିପରି କହିଲୁ ଜଣେ ଉତ୍ତମ ବଷ୍ଟମାଣୀ ଖାଇବାକୁ ମାଗୁଚି।"

ବୀର—"ନାହିଁ ମହାରାଜ! ବଷ୍ଟମାଣୀ କହିନାହିଁ, ମୁଁ ଜଣାଇଲି ଜଣେ ଉତ୍ତମ ବଷ୍ଟମ ଆସି ଖାଇବାକୁ ମାଗୁଚି।

ମହନ୍ତ—"ଆମକୁ ବଷ୍ଟମାଣୀ ପରି ଶୁଭିଲା। ବୀର! ତୁ ଆମକୁ ଟୁଲ୍ଲାକୁ ଦଉଡ଼େଇଲୁ, ହର୍ଷବିଷାଦ କରିଦେଲୁ, ଆଚ୍ଛା! ଭଲ କରି ଚିଲମେ ଗଞ୍ଜା ସାଜ୍, ଗୁଲାବ ପାଣିରେ ଗଞ୍ଜା ମଳିବୁ, ଆଚ୍ଛା ମସଲାଦେଇ ଭାଙ୍ଗ ଘୋଟ୍।..."

ଏଇଭଳି ସ୍ଥାନେ-ସ୍ଥାନେ-ଥିବା ଛାଡ଼ି, ଆଚାରଭ୍ରଷ୍ଟ ବ୍ରାହ୍ମଣଙ୍କୁ ମଧ୍ୟ ଆକ୍ଷେପ ରହିଚି। ଯାହାହଉ ଏ ଭିତ୍ତିରେ ଲେଖକ ପରମ୍ପରା, ରୀତି ନ ମାନି ମୁକ୍ତମନର ପରିଚୟ ଦେଇଚନ୍ତି।

(ଛ) **ଅନ୍ୟାନ୍ୟ:**—ରଙ୍ଗମଞ୍ଚର ପରିକଳ୍ପନା ଅତି ସରଳ ଓ ସଂକ୍ଷିପ୍ତ, ପରିସରରେ ସୀମିତ। ହବାର କଥା, ଯାତ୍ରା ପ୍ରଭୃତିର ମୁକ୍ତ ରଙ୍ଗମଞ୍ଚ ଦର୍ଶନ ଅନୁଭୂତିରେ ଏ ହଉଚି ପ୍ରଥମ ଚେଷ୍ଟା। ଦେଖିବାକୁ ଗଲେ ଏ ଅବଧି ଆମର ଓଡ଼ିଆ ରଙ୍ଗମଞ୍ଚ ସମ୍ପୂର୍ଣ ଆଧୁନିକ ହୋଇନାହିଁ। କାଞ୍ଚିକାବେରୀ ଲେଖକଙ୍କର ରଙ୍ଗମଞ୍ଚ ପରିକଳ୍ପନା ଲାଲ ମହାଶୟଙ୍କର ଅପେକ୍ଷା ଅବଶ୍ୟ ବ୍ୟାପକତର ଯଦିଚ ଦୁଇଟିଯାକ ପ୍ରାଥମିକ, ପୁରାତନ ଓ ମରହଟ୍ଟୀ।

ଲକ୍ଷ୍ୟ ଦୃଷ୍ଟିରୁ ଦେଖାଯିବ, ବାବାଜୀର ଲେଖକ ସମାଜକୁ ମୁକ୍ତ ଓ ସୁସ୍ଥମନର କରିବାକୁ ଚେଷ୍ଟା କରିଚନ୍ତି। ତେଣୁ ବାବାଜୀ ସଂସ୍କାର ମୂଳକ। କାଞ୍ଚିକାବେରୀ ଲେଖକ ଜାତିକୁ ପ୍ରାଚୀନ ଜାତୀୟ ଗୌରବରେ ଉଦ୍‌ବୁଦ୍ଧ କରିବାକୁ ଯତ୍ନ କରିଚନ୍ତି, କିନ୍ତୁ ଭାକ୍ତିକତା ଓ ଜାତୀୟତାର ବିକ୍ଷୋଭଣରେ ସ୍ୱଚ୍ଛ-ଦୃଷ୍ଟି ହେଇ ପାରିନାହାନ୍ତି। ତେଣୁ କାଞ୍ଚିକାବେରୀ ଅନ୍ଧସଂସ୍କାରମୂଳକ। ଭାକ୍ତିକତା ଓ ଜାତୀୟତାରେ ଜାତିକୁ ଅନ୍ଧଦୃଷ୍ଟି, ବିହ୍ୱଳଚିତ୍ତ କରିଚନ୍ତି। ମୁକ୍ତମନ ପାଇଁ ଚେଷ୍ଟା କରିପାରି ନାହାନ୍ତି।

**ନିଷର୍ଷ**—ତେଣୁ ନିଷର୍ଷରେ ଓ ନିକଷରେ ଲାଲ ମହାଶୟ ଆଧୁନିକତର, ତାଙ୍କର ବାବାଜୀ ନାଟକରେ। ପରମ୍ପରା, ରୀତିର ଅର୍ଗଳ ଭେଦ କରି ଏ ପର୍ଯ୍ୟନ୍ତ ବାବାଜୀ, ଆଲୋଚିତ ନାଟ୍ୟଧର୍ମ, ଅଭିନୟ ଯୋଗ୍ୟତା ପ୍ରଭୃତି ଅଧିକତର ଭାବରେ ଧାରଣ କରି ଆସିଥିବାରୁ ପ୍ରଥମ ନାଟକ ଭାବରେ ବିବେଚିତ ହବା ଉଚିତ। ସ୍ପଷ୍ଟବକ୍ତୃତା କିମ୍ବା ସମାଜର ବା ବ୍ୟକ୍ତିର ବହୁବିଭାବ ଧାରଣ ନ କରିବା ତ୍ରୁଟିରେ ତା ଅ-ନାଟକ ହବ ନାହିଁ। ଅପନାଟକ ମଧ୍ୟ ନୁହେଁ। ରକ୍ଷଣଶୀଳ ମନର ଭିତ୍ତିରେ ସ୍ଥିରୀକୃତ ମନ୍ତବ୍ୟର ପ୍ରବାହରେ ଆମେ ଗଡ଼ି ଆସିଚୁଁ। ନାଟକକୁ ନାଟକ ଭାବରେ ପରୀକ୍ଷା ବା ନିରୀକ୍ଷା କରିନାହୁଁ—ଏ କ୍ଷେତ୍ରରେ।

ଯେଉଁ କେତୋଟି ତ୍ରୁଟି ବାବାଜୀରେ, ଅଛି, ପ୍ରଥମ ନାଟକ ହୋଇଥିବା ଦୃଷ୍ଟିରୁ କ୍ଷମଣୀୟ। ଆଉ ଗୋଟିଏ କଥା କୁହାଯାଇ ପାରେ; ବାବାଜୀ ପ୍ରିୟରଂଜନଙ୍କ ମତାନୁସାରେ 'ସ୍କେଚ' ହୋଇପାରେ। ତା ହେଲେ, 'ସ୍କେଚ୍'କୁ ବହୁତ ବ୍ୟାପକ ମଧ୍ୟ କରିବାକୁ ପଡ଼ିବ। ତେଣୁ ବାରମ୍ବାର ଉଲ୍ଲିଖିତ ତା'ର ନାଟ୍ୟଧର୍ମ ବଳରେ ବାବାଜୀ ପ୍ରଥମ ଓଡ଼ିଆ ନାଟକ ହବାଟା ସଂଗତ।

**ପରିଶିଷ୍ଟ : ଗୋଟିଏ ନୂଆ କଥା—**

ବାବାଜୀ ଲେଖା ଆଜିକି ୧୯୭୫ ଏକାଅଶୀ ବର୍ଷ ତଳର। ଓଡ଼ିଆ ସାହିତ୍ୟ ସମାଲୋଚନାର ଉଦୟକାଳ ସେ ଯାଏ ହେଇନାହିଁ କହିଲେ ଚଳେ। ସେଇଯୋଗୁ ତ ଗୌରୀଶଙ୍କର ସଂସ୍କୃତ ରୀତିର ପରିପ୍ରେକ୍ଷାରେ ପୂର୍ବୋକ୍ତ ମତ ଦେଇଚନ୍ତି ବାବାଜୀ ସଂପର୍କରେ।

କିନ୍ତୁ ଲାଲ୍ ମହାଶୟେ ନାଟ୍ୟକାର ହବା ବାହାରେ ସମାଲୋଚକର ସାଧାରଣ କାମ୍ୟ ମୁକ୍ତ ମନ ଯେପରି ଦେଖାଇଚନ୍ତି, ତା'ର ଏଠାରେ ସୁନ୍ଦର, ସ୍ପଷ୍ଟ ସୂଚନା ମିଳେ। ଗୌଡ଼ୀୟ ବୈଷ୍ଣବ ଦର୍ଶନ ବା ଏଇ ଦର୍ଶନମୂଳକ ସାହିତ୍ୟର ସମାଲୋଚନାରେ "ନୂତନ ଦୃଷ୍ଟଭଙ୍ଗୀ" ପାଇଁ ପଣ୍ଡିତ ନୀଳକଣ୍ଠଙ୍କୁଇ ପ୍ରଥମ ସୂରୀ ବୋଲି ଆଜି କୁହା ଯାଉଚି। ଓଡ଼ିଆ ସାହିତ୍ୟର କ୍ରମ ପରିଣାମ ତଥା ତାଙ୍କର ଏ ସଂପର୍କୀୟ ଅନ୍ୟାନ୍ୟ ପ୍ରବନ୍ଧ ଓ ବକ୍ତୃତା ତା'ର ପ୍ରମାଣ। ମୋର ମନେହୁଏ, ନୀଳକଣ୍ଠ ଏ ବାବାଜୀ ନାଟକର ବାବାଜୀଙ୍କର ଗୌଡ଼ୀୟ ବୈଷ୍ଣବ ତତ୍ତ୍ୱ ବ୍ୟାଖ୍ୟାନରୁ ଆଲୋଚନାର ଏ ନୂଆ ସରଣୀ ପ୍ରଥମେ ଗ୍ରହଣ କରିଚନ୍ତି ଏବଂ ତାକୁ ବ୍ୟାପକତର ଓ ବିଶ୍ଳେଷଣାତ୍ମକ ଭଙ୍ଗିରେ ବର୍ଦ୍ଧିଷ୍ଣୁ କରି ପ୍ରକାଶ କରିଚନ୍ତି। ତେଣୁ ଏଇ ନୂତନ ଦୃଷ୍ଟିଭଙ୍ଗୀର ପ୍ରଥମ ଦ୍ରଷ୍ଟା ବା ସମୀକ୍ଷକ ହବାର ପ୍ରଥମ ଗୌରବ ଲାଲ ମହାଶୟଙ୍କୁ ଦବା ଉଚିତ—ନୀଳକଣ୍ଠଙ୍କୁ ନୁହେଁ। ନୀଳକଣ୍ଠ ଗୁରୁଦ୍ରୋଣଙ୍କ ଅର୍ଜୁନ ହବାର ଖ୍ୟାତି ଓ ପ୍ରତିଷ୍ଠା ମାତ୍ର ନେଇ ପାରଚି।

ଯଦି ଦୁହେଁ ଏ ଦୃଷ୍ଟି ପାଇଁ ସ୍ୱତନ୍ତ୍ର ହୁଅନ୍ତି, ତଥାପି ପ୍ରଥମ ହବା ଗୌରବ ଲାଭ ମହାଶୟଙ୍କର।

ବାବାଜୀର ସେଇ ଭାଗଟି ଉଦ୍ଧାର କରାଯାଉଛି। ମୋର କହିବାକଥା ଲକ୍ଷ୍ୟକରି ହବ ଗୌଡ଼ୀୟ ମଠର ବ୍ୟଭିଚାରରେ କ୍ଷୁଣ୍ଣ ଓ ସଂଦିଗ୍ଧ ବୀରସିଂହ ବାବାଜୀଙ୍କୁ ଜିଜ୍ଞାସା କରୁଚି—

"...ସେମାନଙ୍କର ତ ସେବା ଚିନ୍ତା ନାହିଁ। "ପୋଲାରେ ଖାଇ ମେଲାରେ ଗଡ଼ଗଡ଼ାଉଚନ୍ତି, ମନଇଚ୍ଛା ମଉଜ କରୁଚନ୍ତି। ଏଥିପାଇଁ ତ ସେମାନଙ୍କ ବାବାଜୀ ହବାର ଭାବଭକ୍ତି କିଛି ନାହିଁ ଯେ। ପୁଣି ଗୋଟିଏ ଆଚଂବିତ କଥା ଏହି ଯେ କେହି କେହି ଝୋଲାଧାରୀ କହନ୍ତି ଗୌରାଙ୍ଗ ମତରେ "ସ୍ୱକୀୟା ପରକୀୟା"ର ବିଧି ଅଛି। ପରକୀୟା ନ ହେଲେ ପ୍ରେମ ଉପୁଜିବ ନାହିଁ ମହାରାଜ। ଏହା କ'ଣ ସତ ?"

ବାବାଜୀ—"ନା, ନା, ଏହା କିପରି ହୋଇପାରେ ମହାତ୍ମା ଚୈତନ୍ୟଙ୍କର ଅନ୍ୟ ନାମ ଗୌରାଙ୍ଗ, ସେ ପ୍ରେମଧର୍ମ ପ୍ରଚାର କରୁଚନ୍ତି। ତାଙ୍କ ତୁଲ୍ୟ ଈଶ୍ୱରପ୍ରେମୀ ଅନ୍ୟ କେହି ହବାର ବିରଳ। କିନ୍ତୁ ତାଙ୍କର ତ ପରକୀୟା ନ ଥିଲା, ବରଂ ସେ ସ୍ତ୍ରୀ-ସଂପର୍କ ବିବର୍ଜିତ। ସନ୍ନ୍ୟାସ ଧର୍ମ ଗ୍ରହଣ କରିଥିଲେ। ପରକୀୟା ବିନା ତାଙ୍କର କିପରି ପ୍ରେମ ଉପୁଜିଲା। ପରକୀୟା ମତଟି କେତେକ ଲମ୍ପଟ ଗୋସ୍ୱାମୀଙ୍କର ସ୍ୱକଳ୍ପିତ ମତ ଅଟଇ। ତାହା ଶାସ୍ତ୍ରୋକ୍ତ କିମ୍ବା ଚୈତନ୍ୟଙ୍କର ମତ ନୁହେ। ପରକୀୟା ମହାପାପ ଓ ପାପରୁ ପବିତ୍ର ପ୍ରେମ ଉପୁଜି ନ ପାରେ। ତୁ ଏଥିରେ ମତ ଦବୁ ନାହିଁ ବାବା। ଆଉ ଝୋଲି ଯେ ଦେଖୁଚୁ, ଏଥକୁ ଜପ ତପ ଭକ୍ତି ପୂର୍ବକ ଗୋପନରେ କରିବାର ଶାସ୍ତ୍ରରେ ଲେଖେ, କଥାରେ କହନ୍ତି "ଏ ହାତ ପୁଣ୍ୟ ଯେପରି ସେ ହାତ ନ ଜାଣେ।" ଝୋଲି ଘେନି ସକଳ ସମୟରେ ସକଳ ସ୍ଥାନରେ ବୁଲିବା ଏଥିର ବିପରୀତ ଅଟେ, ତାହା କେବଳ ଲୋକ ଦେଖାଣି। ସେଥିରୁ କି ଫଳ, "ମନରେ ନାହିଁ ତ ମାଳିରେ ନାହିଁ। ମାଳି ଜପି ଜପି ପାଇବୁ କାହିଁ।" ମନ ଇ ମୂଳ। "ରାମ୍ ରାମ୍ ସବ୍‌କୋ ହି କହେ ଠିକ୍ ଠାକୁର୍ ଓର୍, ଚୋରବିନା ପ୍ରେମ୍‌ସେ ରିଝେ ନହିଁ ତୁଲସୀ ନନ୍ଦକିଶୋର୍।"ଆହୁରି ଏକ ଦୋହାରେ କହିଚନ୍ତି "ମନକା ଫେରତ ଜନମ ଗୟା ନ ଗୟା ମନକା ଫେର୍। କର୍‌କା ମନକା ଛୋଡ଼୍‌କର ମନକା ମନକା ଫେର୍।" ଏଥିର ମର୍ମ ବୁଝି ପାରିଲୁ ନାହିଁ ପରା। ମାଳି ଫେରାଇ ଫେରାଇ ଜନ୍ମଗଲା, କିନ୍ତୁ ମନର ଫେର ନ ଗଲା। ଅତଏବ ହାତର ମାଳି ଛାଡ଼ି ମନର ମାଳି ଜପ।"

ବୀରସିଂହ—"ଠିକ୍ କଥା ମହାରାଜ। ଏ ବିଷୟରେ ମୋର ବଡ଼ ସଂଶୟ ଥିଲା। ଆଜି ଆପଣଙ୍କ ଯୋଗେ ତାହା ଦୂର ହେଲା। ଆଜି ବଡ଼ ଜ୍ଞାନ ପାଇଲି...।"

ଯା ସାଙ୍ଗକୁ (୪୨ ପୃଷ୍ଠାର) ଜାମୁନୀ ଓ ବୀରସିଂହଙ୍କର ସଂଳାପ ଏବଂ (୪୩ ପୃଷ୍ଠାର) ମହନ୍ତ ଓ ବୀରସିଂହଙ୍କର ସଂଳାପ ଯୋଗ କରାଯାଇ ପାରେ। ଏଠି ଥିବା ବ୍ୟଙ୍ଗବିଦ୍ରୂପ ମଧ୍ୟ ସମାଲୋଚନା ରୂପରେ ନୀଳକଣ୍ଠଙ୍କଠାରେ ଦେଖାଦେଇଛି।

ଆଉ ଗୋଟିଏ କଥା ଯେ, ଚରିତ୍ରମୁଖରେ ଏ ସମସ୍ତ ଦେଇଥିବାରୁ ସମାଲୋଚନାର ପ୍ରତ୍ୟକ୍ଷ ରୂପ ଏ ସବୁ ଦୃଷ୍ଟିଭଙ୍ଗି ନେଇନାହିଁ, କିନ୍ତୁ ସଂଳାପରେ ସମାଲୋଚନାର ଗୋପିତ ବା ପ୍ରଚ୍ଛନ୍ନ ରୂପ ରହିଛି।

ସାହିତ୍ୟ ସମାଲୋଚନା କ୍ଷେତ୍ରରେ ଜଗନ୍ମୋହନ ଲାଲଙ୍କର ଏଇ ମୁକ୍ତ ମନର ଅଙ୍କୁରଟି ନୀଳକଣ୍ଠଙ୍କ ଯୋଗେ ପଲ୍ଲବିତ, ଶାଖା ପ୍ରଶାଖା-ଶୋଭିତ ତଥା ପୁଷ୍ପିତ ହେଇଚି ବୋଲି ମନେହୁଏ। ବାବାଜୀଙ୍କ ମୁଖରେ ତାଙ୍କ ମତର ଆଲୋଚନା ନିଷ୍ପ୍ରୟୋଜନ। ଏତିକି କହିଲେ ହବ, ନୀଳକଣ୍ଠଙ୍କ ପ୍ରସାରିତ ନୂତନ ବିଚାରଭଙ୍ଗୀ ତଥା ମୁକ୍ତ ଦୃଷ୍ଟି ତହିଁରେ ଅତି ସଂକ୍ଷିପ୍ତ ରୂପରେ ପୂର୍ବରୁ ସଂଚିତ ଥିଲା। ଏ ଭାଗଟି ଗୌରୀଶଙ୍କର ପ୍ରଭୃତି ଲକ୍ଷ୍ୟ କରି ପାରି ନାହାନ୍ତି, ଗତାନୁଗତିକ ଥିବାରୁ ଏବଂ ରକ୍ଷଣଶୀଳ ଆଲୋଚନା ଥିବାରୁ।

ଏ ଦିଗରୁ ବାବାଜୀର ଏହା ଗୋଟିଏ ବଡ଼ ଦାନ।

ଶେଷରେ ଆଦି ନାଟ୍ୟକାର ଲାଲ୍‌ଙ୍କ ଏକ ବୈୟକ୍ତିକ ଭାବସଂପଦର ଅନନ୍ୟ ଚିତ୍ରର ଉଲ୍ଲେଖ ନ କଲେ ମନେ ହବ, କୋଣାର୍କର ମୁଣ୍ଡି ଯେମିତି ମରାଗଲାନାହିଁ।

ନାଟକର ପ୍ରଦର୍ଶନ ସମାପ୍ତି ବେଳକୁ ଗୋଟିଏ ଆଶୀର୍ବାଦମୂଳକ ବା ଶୁଭେଚ୍ଛା ସଂପନ୍ନ ଶ୍ଳୋକ ଦିଆଯାଉଥିଲା। ନାଟ୍ୟକାର ସିନା ତାହା ଲେଖିଥାନ୍ତି, କିନ୍ତୁ କୁହାଯାଉଥିଲା ଭରତ ବାକ୍ୟ। ଦର୍ଶକମାନଙ୍କ ପ୍ରତି ନାଟ୍ୟଶାସ୍ତ୍ରଜନକ ଭରତମୁନିଙ୍କ ଅପରିମିତ ହୃଦୟନିର୍ଗତ ଶୁଭକାମନା ବା ଆଶୀର୍ବାଦ। ଜଗନ୍‌ମୋହନ ଲାଲ୍ ପ୍ରଥମେ ସଂସ୍କାରଧର୍ମୀ ଓଡ଼ିଆ ନାଟକ "ବାବାଜୀ ରଚନା" କରି, ତହିଁରେ ସମାପ୍ତି ପଦ ତଳେ ଡାହାଣପଟକୁ ପଦଟିଏ ଲେଖିଥିଲେ– 'ଆଶୀର୍ବାଦ'।

ଏହା ଥିଲା ବ୍ରାହ୍ମ ହୃଦୟର ସ୍ୱଚ୍ଛ ହିତୈଷୋପ୍ରତିବିମ୍ବିତ ଧର୍ମ। ଆଉ କେହି ଆମର ନାଟ୍ୟକାର ଏପରି ଶୁଭକାମନା ଉପଭୋକ୍ତା ଦର୍ଶକସମାଜକୁ ଜଣାଇଥିବା ମନେ ହଉନାହିଁ। ଏ ନାଟକରେ ସଂସ୍କୃତର ସଂପର୍କ ନଥିଲେ ବି ଏଇ ଆଶୀର୍ବାଦ ଭରତମୁନିଙ୍କ ହୃଦୟ ନିଃସାରିତ ଧ୍ୱନି ପରି ପ୍ରତୀତ ହୁଏ।

— ୦ —

## ପ୍ରକାଶକୀୟ

୧୮୩୫ରେ ହେନ୍‌ରି ରିକେଟ୍‌ସ୍ କଟକ୍କୁ କଲେକ୍‌ଟର୍ ରୂପେ ବଦଳି ହୋଇ ଆସିଲାବେଳକୁ ପୂର୍ବୋକ୍ତ ଚାକିରିଗୁଡ଼ିକରୁ ସେମାନଙ୍କୁ ଅନ୍ତର କରିସାରିଥିଲେ। ବର୍ତ୍ତମାନ କୋର୍ଟ୍ କଚେରି ଓ ବିଚାର ବିଭାଗରେ ଓଡ଼ିଆ ଭାଷାର ବ୍ୟବହାର ପ୍ରଚଳନ କରିବାର ଉଦ୍ୟମ କରି, ୧୮୩୯ ଜାନୁଆରି ମାସରୁ ସେଥିପାଇଁ ତାଙ୍କର ଊର୍ଦ୍ଧ୍ୱତନ Bengal Board of Directorsଙ୍କର ସମ୍ମତି ଲାଭ କଲେ। ଫଳରେ ଅନାବଶ୍ୟକ ପାର୍ଶୀ ଉଠିଗଲା। ଓଡ଼ିଆ ଚଳିଲା। ଏହାର ବ୍ୟବହାର ସରଳ, ସଂକ୍ଷିପ୍ତତର ବାକ୍ୟର ପଦମାନ ଛଡ଼ାଛଡ଼ା ଓ ସ୍ପଷ୍ଟାର୍ଥବୋଧକ ହେବା ସକାଶେ ବିରାମଚିହ୍ନ (Punctuation marks) ପ୍ରଚଳନପୂର୍ବକ ପରୀକ୍ଷାମୂଳକ ବ୍ୟବସ୍ଥା ଆରମ୍ଭ କରିଦେଲେ।

ଲାଲ୍ ମହାଶୟଙ୍କ ବାବାଜୀ ନାଟକରେ ରିକେଟ୍‌ସ୍‌ଙ୍କ ଆଶା ଆଂଶିକ ଉପଲବ୍ଧ ହୋଇଥିଲେ ବି ନିରବଚ୍ଛିନ୍ନ ଭାବେ ପାଳିତ ହୋଇପାରି ନାହିଁ। ତାହା ସୁଧାରିବାକୁ ଯଥାସାଧ୍ୟ ଉଦ୍ୟମ 'ବାବାଜୀ'ରେ କରାଯାଉଛି।

*ଦୀପ୍ତିପ୍ରଭା ମିଶ୍ର*

# ପ୍ରଥମ ଅଙ୍କ

| | |
|---|---|
| ରଙ୍ଗଭୂମି | *ବାବୁ ସୁବଳ ପଟ୍ଟନାୟକଙ୍କ ବୈଠକ ଖାନା ।* |
| | (ବାବାଜୀଙ୍କର ପ୍ରବେଶ) |
| ବାବାଜୀ | ଜୟ ଜୟକାର ହେଉ । |
| ବାବୁ | ଦଣ୍ଡବତ ମହାରାଜ (ପଞ୍ଚାଙ୍ଗ ପ୍ରଣାମ) |
| ବାବାଜୀ | ମଙ୍ଗଳ ହେଉ, ଈଶ୍ୱର ସଦା ସୁଖୀ ରଖନ୍ତୁ । |
| ବାବୁ | ବସିବା ହେଉନ୍ତୁ । ଏହି ଚୌକିରେ ବସନ୍ତୁ । କୁଆଡ଼େ ଆସିବା ହେଲେ ମହାରାଜ ? |
| ବାବାଜୀ | ଆପଣଙ୍କଠାକୁ ଆସିଲେଇଁ । |
| ବାବୁ | ଆପଣଙ୍କର ମଠ କୌଠାରେ ? |
| ବାବାଜୀ | ଆମର ମଠ ନାହିଁ ବାବା । ଘର ଛାଡ଼ିଲେଇଁ ତ ମଠରୁ କି କାର୍ଯ୍ୟ, ଘରଧନ୍ଦା ଓ ମଠଧନ୍ଦା ସମାନ ଅଟେ । ଯେଉଁସ୍ଥାନରେ ଆସନ କଲୁଁ ସେହି ଆମର ମଠ, ଆମେ ତ ଏକ ସ୍ଥାନରେ ଅନେକଦିନ ରହୁ ନା ଦେଶ ଭ୍ରମଣରେ ଥାଉଁ । ଦୁଇଦିନ ହେଲା ଏଠାକୁ ଆସି ନଦୀକୂଳ ତୋଟାରେ ଆସନ କରିଛୁଁ ଭୋଜନ ନ ମିଳିବାରୁ ଆପଣଙ୍କଠାକୁ ଆସିଗଲୁଁ । |
| ବାବୁ | (ଦୁଇ ପଇସା ବଢ଼ାଇ) ନେବା ହେଉନ୍ତୁ ମହାରାଜ । |
| ବାବାଜୀ | ପଇସା ! ଆମେ ପଇସା ଭିକ୍ଷା କରୁ ନା ବାବା, ଦ୍ୱାର ଦ୍ୱାର ପଇସା ମାଗିବୁଲିଲେ ସେଇଥିରେ ଦିନ ଯିବ ପୂଜା ଧ୍ୟାନ ଭଜନ ଏହାସବୁ କରିବୁଁ କେତେବେଳେ ? ପଇସାରୁ ଲୋଭ ଜନ୍ମେ, ସାଧୁ ସନ୍ଥଙ୍କର ପଇସା କଉଡ଼ିରୁ କି ପ୍ରୟୋଜନ ? ଭୋଜନ ମିଳିଲେ ହେଲା । ଯେବେ ଆପଣଙ୍କର ଇଚ୍ଛା ହୁଏ ତେବେ ପୂର୍ଣ୍ଣ ଭୋଜନ ଦେବା ହେଉନ୍ତୁ ନଚେତ୍ ଆମେ ଆଉ କେହି ଦାତାକୁ ଦେଖିବା । ସେଥିପାଇଁ ଆମର ତାଦୃଶ ଚିନ୍ତା ନାହିଁ ଈଶ୍ୱରଙ୍କ କୃପାରୁ କୌଣସିରୂପେ ମିଳିଯିବ । |

ବାବୁ	ଆଚ୍ଛା ମହାରାଜ, ଯତ୍‌କିଞ୍ଚିତ ଭୋଜନ ଦର୍ବୁଁ। ଆପଣଙ୍କୁ ନ ଦର୍ବୁଁ ତ ଆଉ ଦର୍ବୁଁ କାହାକୁ? ଆପଣଙ୍କ ତୁଲ୍ୟ ଧୀର ଓ ଜ୍ଞାନୀ ସାଧୁ ଆମେ ପ୍ରାୟ ଦେଖି ନାହୁଁ।

ବାବାଜୀ	ନାହିଁ ବାବା, ଆମେ କି ସାଧୁ, ଆମର କି ଜ୍ଞାନ, "କୀଟସ୍ୟ କୀଟାୟତେ" ଆମେ ସାଧୁ ନାମର ଯୋଗ୍ୟ ନୋହୁଁ।

ବାବୁ	ହଁ ଆପଣ ତ ଏପରି କହିବେ, ଆମେ ତ ଦେଖି ନାହୁଁ ଇରେ ରାମା, ରାମା-

ରାମା	ଆଜ୍ଞା (ଭିତରେ ଥାଇ)

(ରାମାର ପ୍ରବେଶ)

ବାବୁ	ଇରେ ବାବାଜୀଙ୍କ ପାଇଁ ଗୋଟିଏ ସିଧା ସଜାଡ଼ି ଆଣ।

(ରାମାର ପ୍ରସ୍ଥାନ)

ବାବୁ	ମହାରାଜ। ତମାଖୁ ଖାଉନ୍ତୁ (ଚିଲମ ବଢ଼ାଇ) ନେବା ହେଉନ୍ତୁ, ଗଞ୍ଜା ଚାହି?

ବାବାଜୀ	ଆମେ ତ ତମାଖୁ ଖାଉଁ ନା ବାବା, ଗଞ୍ଜା କଣ ହେବ, ଚିଲମ ରଖନ୍ତୁ। ଗଞ୍ଜା ଭାଙ୍ଗ ଆଦି ଆମର କିଛି ହୁଏନା ଭୋଜନ ନକଲେ ଜୀବନ ନ ରହିବ, ଏଥିପାଇଁ ଭୋଜନ ଆବଶ୍ୟକ। ନିଶାପାଣିରୁ କି କାର୍ଯ୍ୟ, ସେଥିରେ ମତି ଗତି ଠିକ୍ ରହେ ନାହିଁ।

ବାବୁ	ମତି ଗତି ଠିକ୍ ରହେ ନା? ତେବେ କିପରି ବୈରାଗିମାନେ ନିଶା ଖାନ୍ତି। ଆହୁରି ଗୋଟିଏ ବଚନ ଅଛି, "ଯୋଗୀ ଖାଓ୍ବେ ଯୋଗଧ୍ୟାନ ଧରେ ହରିକେ ନାମ ଉଚାରନେକୁ"।

ବାବାଜୀ	ହଁ, ଏପରି କଥା ଅଛି। କିନ୍ତୁ ତାହା ନିଶାଖୋରଙ୍କ କଥା, ଶାସ୍ତ୍ରର ବଚନ ନୁହେଁ। ନିଶା ବଡ଼ ମନ୍ଦ, ତାହା ସ୍ପର୍ଶ କରିବାର ନୁହେ।

ବାବୁ	ନାନା ମହାରାଜ, ନିଶା ଏପରି ମନ୍ଦ ନୁହେ। ସେଥିରେ ଗୁଣ ଦୁର୍ଗୁଣ ଦୁହେଁ ଅଛନ୍ତି। ଅଧିକ ଖାଇବାର ଅବଶ୍ୟ ଦୋଷ, କେବେ କେବେ ଅଳ୍ପ ଖାଇଲେ କିଛି ଦୋଷ ନାହିଁ, ବରଂ ଭଲ ହୁଏ। ମନ ମଗ୍ନ ହୋଇ ରହେ, ଯେତେ ବଡ଼ ଶୋକସନ୍ତାପ ଥାଉ ସବୁ ଭୁଲିଯାଏ। ନିଶାରେ ବଡ଼ ମଉଜ।

ବାବାଜୀ ହଁ ମଉଜତ ହୁଏ, ସେପରି ମଉଜରୁ ଆମର କି ପ୍ରୟୋଜନ। ନିଶା ପାଁଇ ପଇସା ଲୋଡ଼ା ହେବ, ପଇସା ପାଁଇ ଦ୍ୱାର ଦ୍ୱାର ବୁଲିବାକୁ ପଡ଼ିବ, ସେହି ଚିନ୍ତାରେ ଦିନ ଯିବ ଭଗବାନଙ୍କୁ ଚିନ୍ତିବୁଁ କେତେବେଳେ ? ବଡ଼ଲୋକମାନେ ମଉଜ ଖୋଜନ୍ତି କିନ୍ତୁ ନିଶାରେ ଆଗେ ମଜା, ପଛକୁ ବଡ଼ ବେମଜା, ସାର ମଉଜ ଈଶ୍ୱର ଚିନ୍ତାରେ। ତେବେ ରୋଗପାଇଁ ଔଷଧସ୍ୱରୂପ ମାଦକଦ୍ରବ୍ୟ ବ୍ୟବହାର କରିବାର ତାଦୃଶ ଦୋଷ ହୋଇ ନ ପାରେ।

(ରାମା ସିଧାଘେନି, ପ୍ରବେଶ)

ବାବୁ ମହାରାଜ ! ସିଧା ନେବା ହେଉନ୍ତୁ।

ବାବାଜୀ ଆଚ୍ଛା ବାବା ଆନନ୍ଦ ହେଉ ମାତ୍ର ଏ ରୋଷେଇର ସାମଗ୍ରୀ, ଓ ପାକ କରିବାର ଆମକୁ ବଡ଼ କଠିଣ। ଆମ ସଙ୍ଗରେ ଜଣେ ବୈଷ୍ଣବ ଥିଲା ତାକୁ ଆମେ ଶିକ୍ଷା ଦେଉଥିଲୁଁ ଓ ସେ ଆମର ରୋଷେଇ କରୁଥିଲା, ବର୍ତ୍ତମାନ ସେ ଆମ ସଙ୍ଗରେ, ନାହିଁ।

ବାବୁ ତାକୁ କାହିଁକି ଛାଡ଼ିଦେଲେ, ଆପଣଙ୍କୁ ବଡ଼ କଷ୍ଟ ହଉଥିବ।

ବାବାଜୀ ନାହିଁ ଆମର କି କଷ୍ଟ, ନିର୍ବାହକର୍ତ୍ତା ଭଗବାନ୍। ମନୁଷ୍ୟର ସଙ୍ଗ ଚିରସ୍ଥାୟୀ ନୁହେ, କେବଳ ଧର୍ମଇ ଚିରକାଳର ସଙ୍ଗୀ। ଆପଣ ଏ ସିଧାକୁ ରଖନ୍ତୁ। ଠାକୁରଙ୍କର ପ୍ରସାଦ ମୁଠିଏ ହେଲେ ଭୋଜନ କରି ଭଜନ କରିବୁଁ।

ବାବୁ ମହାରାଜ ! ପ୍ରସାଦ ସମସ୍ତେ ସେବା କଲେଣି, ଆପଣଙ୍କ ସକାଶେ ଆଉ ରୋଷେଇ ହେଲେ ହବ (ରାମା ପ୍ରତି) ଏ ସିଧା ପୂଝାରିକୁ ଦେଇ ରୋଷେଇ କାରିବାପାଇଁ କହି ଦେ।

ରାମା ସେ ତ ଶୋଇବାକୁ ଯାଉଚି, ମୁଁ କହିଲାମାତ୍ରକେ ଡେଁଇବ, ମୋ ଉପରକୁ କାମୁଡ଼ି ହବ।

ବାବୁ ଆଚ୍ଛା ରହ, ମୁଁ ତାକୁ ଡାକି କହିଦେଉଚି। ପୂଝାରି ! ପୂଝାରି !

(ଆନନ୍ଦପଣ୍ଡା ପୂଝାରିର ପ୍ରବେଶ)

ବାବୁ ପୂଝାରି ! ଏ ସିଧା ନେଇ ଠାକୁରଆଡ଼େ ରୋଷେଇ କର, ମହାରାଜ ଭୋଜନ କରିବେ, ଚଞ୍ଚଳ କରିବ।

(ପୂଝାରୀ ସିଧା ଘେନି ପ୍ରସ୍ଥାନ)

ବାବୁ — ମହାରାଜ ! ରୋଷେଇ ହଉଁ ହଉଁ କିଛିଟ୍ ବିଳମ୍ବ ହେବ, ଏଥି ମଧ୍ୟରେ ଭଜନ କରନ୍ତୁ ଆମ୍ଭର କର୍ଣ୍ଣ ପବିତ୍ର ହେଉ ।

ବାବାଜୀ — ଆଚ୍ଛା ବାବା ?
(ଭଜନ-ରାଗ ଝିଞ୍ଜିଟ, ତାଳ ଏକତାଲା ।)
ମୋର ଦୀନବନ୍ଧୁ ଦୟାଳ ଅନ୍ୟ ନାହିଁ କେହି ।
ଅଖିଳ ଅନିତ୍ୟ ନାଶଶୀଳ, ଅବିନାଶୀ ସେହି ।
ଜଗତ ପିତା ଜଗତ ମାତା ଭକତ ଭାବଗ୍ରାହୀ ।
କରନ୍ତି ତ୍ରାଣ ପତିତ ପ୍ରାଣ ଭଜେ ତାଙ୍କୁ ଯେହି ।

ବାବୁ — ଆହା ! ଆପଣତ ଉତ୍ତମ ଭଜନ କରନ୍ତି, ବାଜା ହେଲେ ଆହୁରି ଭଲ ହୁଅନ୍ତା । ଆଚ୍ଛା ଆମେ ଜଣେ ବାବୁଙ୍କୁ ଡକେଇ ଆଣୁଚୁ, ସେ ବଜେଇବେ ଆପଣ ଗାଇବେ । ରାମା ! ଯଶୁବାବୁଙ୍କୁ ଡାକିଆଣ ତ, କହିବୁ ଏହିକ୍ଷଣି ଆସିବେ ।
(ରାମାର ପ୍ରସ୍ଥାନ ଓ ବାବୁ ଯଶୁଭଟ୍ଟାଚାର୍ଯ୍ୟଙ୍କର ପ୍ରବେଶ)

ବାବୁ — ଆସୁନ୍ ଭଟ୍ଟାଚାର୍ଯ୍ୟ ମହାଶୟ ଆସୁନ୍ । ପ୍ରାତ୍‌ପ୍ରନାମ୍ ।

ଯଶୁ — ପ୍ରାତର୍ଜୟସ୍ତୁ । ଦୁପର ବେଲାୟ ଜୋରତଲବି କେନ ?

ବାବୁ — ଏଇ ବାବାଜୀ ବେଶ୍ ଭଜନ କର୍ଛେନ, ଓଁର ଆହାରେର ଯୋଗାଡ଼ ହଚେ ଏର ମଧ୍ୟେଗାନ କରାଯାକ୍ ଆପନି ବାଜାବେନ ଉନି ଗାଇବେନ । ଇରେ ରାମା !
ତମାଖୁ ଆଣ୍ ତବଲା ଦେ ।
(ରାମା ତମାଖୁ ତବଲା ଦେଲାରୁ ।)

ବାବୁ — ଆଗେ ତାମାକଟା ଖେୟେନିନ୍ । ପ୍ରତି ରବିବାରେ ପଶାଖେଲା ହୟ, ଏ ରବିବାର ପାଶା ବନ୍ଦ କରେ ଏଇ ଆମୋଦ କରାଯାକ୍ ।

ଯଶୁ — ମଦ ନାହଲେ କି ଆମୋଦ ହୟ । କାଲ ଅମାଦେର ଖୁବ ହୟେଛିଲ, ଆପନି ଛିଲେନ୍ କୋଥାୟ ? ଶନିବାରେର ରାତଟା ବୃଥାୟ କାଟାଲେନ୍ ।

ବାବୁ — ସମ୍ପୂର୍ଣ୍ଣ ବୃଥା ଯାୟ ନାଇ, ଅଚାଚ୍ଛି କିଛୁ ହୟେଚେ । ଓ ଶନିବାର କତକଗୁଲୋ ଜଡ଼ ହୟେ ବଢ଼ ଗୋଲ କର୍ଲେ ଏତେ ଦୁର୍ନାମ ହୟ, ଚୁପଚାପ୍ ଯା କରାଯାୟ ତାଇ ଭାଲ । ଏଖନ ହୟ କେମନ କରେ, ଇନି ଯେ ଆଛେନ୍ ।

ଯଶୁ — ଥାକ୍ ଓ କି ଜାନେ, ବେଦାନାର ଶରବତ୍-

ବାବୁ — ଠିକ୍ ବଲେଛେନ୍। (ବାବାଜୀପ୍ରତି) ମହାରାଜ! ଏ ତାକୁ ଖରାରେ ଆସିଚନ୍ତି, ଆଗେ ତାଙ୍କୁ ଟିକିଏ ବେଦାନାର ଶରବତ୍ ଦେଇଁ। ରାମା! (ଆଖିରେ ଠାରି) ଶରବତ୍ ବୋତଲ ଓ ଗିଲାସଟା ଦେ, ଦାଣ୍ଡଦ୍ୱାର ଲଗେଇ ଦେଇ ଆ।

(ରାମା ବୋତଲ ଓ ଗିଲାସ ଦେଲାରୁ ବାବୁ ଗିଲାସରେ ସୁରାଢ଼ାଳି)

ବାବୁ — ନିନ୍ ଭଟ୍ଟାଚାର୍ଯ୍ୟ ମହାଶୟ ଶରବତ୍ ଖାନ୍। ଆର ଦୁହୋଜ୍ ଲାଗାତେ ହବେ।

ଯଶୁ — (ପାନକରି) ଆଜ୍ଞନୟ, କାଲ୍କେର ଯେ ଏଖନୋ ବାକୀ ଆଛେ, ଆର ଖେଲେ ବାଜାତେ ପାରବ ନା।

ବାବୁ — ତବେ ବୋତଲଟା କି ଆମି ଏକାକୀ ନିଶେଷ କରବ, ଆଚ୍ଛା, (ପେଟରେ ହାତମାରି) ଆମାର ପେଟ୍ଟା ଫେଁପେଁଚେ କି କରି ବଲୁନ୍ ଦେଖି।

ଯଶୁ — ଏଇ ଶରବତ୍ ବେଶକରେ ଖାନ୍, ଏଖନି ଭାଲ ହୟେ ଯାବେ।

ବାବୁ — କେମନ୍! ଏତେ ଭାଲ ହୟେ ଯାବେ, ତବେ ଖାଇ (ବାବୁଙ୍କର ପୁନଃ ପୁନଃ ସୁରାପାନ)

ଯଶୁ — (ତବଲା ନେଇ) ମହାରାଜ! ଭଜନ କିଛିଏ।

(ଭଜନ-ରାଗିଣୀ ଜଙ୍ଗଲା ତାଳ ଠୁମରି।)

ପତିତପାବନ ସତେକି ଦର୍ଶନ କରିବ ଏ ପାପୀ ପାଦ ତୁମ୍ଭରି।
ସେହି ଯେ ଚରଣ ଅମୃତ ପୂରଣ
କୋଟି କୋଟି ପାପ ସନ୍ତାପହାରୀ।
ମୋହରେ ଜଡ଼ିତ ହୋଇଛି ମୋ ଚିତ୍ତ
ଜଟିଳ କୁଟିଳ ଘୋର ସଂସାରୀ।
ଉପାୟ ନାହିଁତ ତୁମ୍ଭରି ବ୍ୟତୀତ, ରଖ ହେ ଅଧମ ଉଦ୍ଧାରକାରୀ।
ଯେ ଇଚ୍ଛା ସେ ଦଣ୍ଡ ଦେଇ
ପାପ ଖଣ୍ଡ, କର ମୋତେ ତବ ସେବନକାରୀ।
କରିଣ କରୁଣା ଏତିକି କାମନା
ପୂର୍ଣ୍ଣ କର, ଶୁଣ ମୋର ଗୁହାରି।

(ବାବୁଙ୍କର ଭକ୍ତରଭଙ୍ଗୀ ଓ ନୃତ୍ୟ)

ଯଶୁ	ଏକ୍‌ଟୁ ଭାଇଙ୍କରେ ନାଚୁନ୍‌ନା ଆମି ଗଦ୍ ବାଜାଇ।

ବାବୁ	ହାଁ ବାବା ନାଚଚି, ରସ ବାବା, ବାଇ ସେଜେନି।
(ବାବୁ ବାଇବେଶ ହୋଇ ନୃତ୍ୟ ଓ ଚିତ୍କାର କରି ଭୂମି ଗତ)

ବାବାଜୀ	(ସ୍ୱଗତ) ମୁହଁର କଥା ମୁହଁରେ ଅଛି ଦେଖୁ ଦେଖୁ କଣ ହେଲା! କି ଦୁଃଖର ବିଷୟ ଏପରି ବ୍ୟକ୍ତିର ଏପରି ଆଚରଣ!

ଯଶୁ	ମହାରାଜ! ବାବୁ ଘୁମାଗୟା, ହାମ ଯାତେ ହେଁ, ଆପ୍ ଭୋଜନକୁ ଯାଓ। ପୂଜେରିକୁ ବୋଲ୍ ଦେତେ ହେଁ। ପୂଜେରି ପୂଜେରି!
(ଆନନ୍ଦପଣ୍ଡାର ପ୍ରବେଶ)

ଯଶୁ	ପୂଜେରି! ମୁଁ ଯାଚି ତୁ ବାବାଜୀକୁ ଖାଓ୍ୟାଇବୁ, ରାମା! ବାବୁକୁ ଜାଗିଥିବୁ।

ପୂଝାରୀ	ଆସ ମହାରାଜ ଠାକୁରପିଣ୍ଡାକୁ ଆସ।

ପ୍ରସ୍ଥାନ

# ଦ୍ୱିତୀୟ ଅଙ୍କ

ରଙ୍ଗଭୂମି-ବାବୁଙ୍କ ଠାକୁରପିଣ୍ଡା ।

ପୂଝାରୀ ମହାରାଜ ! ଏହିଠାରେ (ପିଣ୍ଡାର ଏକ ପାର୍ଶ୍ୱରେ) ବସ । (ଏହା କହି ଅଗ୍ରସର)

(ଦାମା ପିଣ୍ଡାର ଅନ୍ୟ ପାର୍ଶ୍ୱରେ ପ୍ରବେଶ)

ପୂଝାରୀ ଦାମା ! ଏ ବାବାଜୀଙ୍କୁ କୁଆଡ଼େ ତାନେ ରୋଷେଇ କରି ଖୋଇବି । ଆମ ବାବୁ ଯେ ଯିଏ ଯାହା ମାଗିଲା କହିବ "ଦେ", ଆମ ଦରମାହା ଦେଲା ବେଳକୁ ଖଟଖଟ ; ପାଉନାବାଲା କୋଡ଼ିଏ ଥର ଦଉଡ଼ିଲେ ପାଇବାର ମୁସ୍କିଲ, ବାବାଜୀ ବେଳକୁ ଦାତାକ୍ଷେଣ୍ଣ ଓ ବଡ଼ ଲୋକିରେ ବାକୀ ନାହିଁ; ଭଲା ଏ କୋଉରୀତି । ଯେ ଟେକି ଟାକି କହିଲା ସେ ନେଇ ଚାଲିଗଲା ଆମେ ଜଳକାଙ୍କ ପରି ବସିଥିବୁଁ ! ସେ କଥା ଯା ହେଉ ଏଉଟା ଏତେବେଳକୁ କୁଆଡ଼ୁ ଆସିଲା । ଓଳିକଯାଙ୍କ ଖଟି ଖଟି ଟିକିଏ ଶୋଇଥିଲି, ଏଇଟା ଆସି କଣ୍ଟକ ହେଲା । ରହ ତାକୁ ହୀନସ୍ତା କରି ମାରୁଚି ।

ଦାମା ଶୁଣିଲୁ "ସ୍ୱର୍ଗକୁ ନିଶୁଣି ନାହିଁ, ବଡ଼ଲୋକକୁ ଉତ୍ତର ନାହିଁ" ସେମାନଙ୍କୁ ସବୁ ସାଜେ । ତୁ ଯେବେ ବାବାଜୀ ପାଇଁ ସିଧା ଆଣି ତାକୁ ଖାଇବାକୁ ନ ଦେବୁ ବାବୁ ଶୁଣିଲେ ତୋର କି ଦଶା ହବ, ଆଜି ତୋ କପାଳରେ ଗାଳି ଗୁଡ଼ିଏ ଅଛି ।

ପୂଝାରୀ ବାବୁ ଆଉ ନାହାଁନ୍ତି ଯେ, ଧନ ମଦରେ ମରି କି ଶୋଇଲେଣି, ଆଉ ଡର କୌ କଥାକୁ ।

ଦାମା ବୁଝିଲୁ, ବୈଷ୍ଣବ ଆହାରମୁଖା ହୋଇ ଆସିଚି, ଖାଇବାକୁ ନ ଦେଲେ ତାହାର କୋହ ତୋ ଉପରେ ପଡ଼ିଯିବ ।

ପୂଝାରୀ — ଉଁ ଏପରି କେତେ ବାବାଜୀ ଦେଖିଚି, କେତେ ଜଣକୁ ହୀନସ୍ତା କରିଚି। ବ୍ରାହ୍ମଣ ଉପରେ କୁଆଡ଼େ ବଷ୍ଟମର କୋହ ପଡ଼ିବ, ସେ ଯେ ମୋ ନିଦ ଭଙ୍ଗେଇଲା ସେମନ୍ତେ ମୋ କୋହ୍ନ କୌ ତା ଉପରେ ନ ପଡ଼ିବ କି? ଆଚ୍ଛା ରହ ମୁଁ ଆଗେ ଟିକିଏ ରଙ୍ଗ କରେଁ।

ଦାମା — ହଉ ବାବୁ ତୋ ମନକୁ ଯା ଆସେ ତା କର, ତୋତେ କିଏ ପାରିବ, ବାବୁଙ୍କୁ ତ ପାଠ ପଢ଼େଇ-ଦେଉ ଆମେ କି ଛାର।

ପୂଝାରୀ — ମହାରାଜ! ଅନ୍ନ ଅଛି ତିଅଣ ନାହିଁ, କଣ ଦେଇ ଖାଇବ, ଶୁକୁଆ ହବ?

ବାବାଜୀ — ହଉ ବାବା ଶୁଖାରୁଖା ଯାହା ଅଛି ପାଇ ଦେବା।

ପୂଝାରୀ — ଶୁଖାରୁଖା କହୁ ନାହିଁ ଯେ, ଶୁକୁଆ।

ବାବାଜୀ — ଶୁକୁଆ କଣ ବାବା, ଆମେତ କେବେ ଖାଇ ନାହୁଁ।

ପୂଝାରୀ — ଶୁକୁଆ ଜାଣ ନା, ଆଉ ତେବେ କଣ ଜାଣ! ମାଛରୁ ଶୁକୁଆ ହୁଏ ସମସ୍ତେ ଖାନ୍ତି। ଏବେ ଅନେକ ବ୍ରାହ୍ମଣ ବଷ୍ଟମ ସୁଦ୍ଧା ନୁଚେଇ ଚୋରେଇ ପାଇଦେଉଚନ୍ତି।

ବାବାଜୀ — ଆରେ! ବୈଷ୍ଣବ ମାଛ ଶୁକୁଆ ଖାନ୍ତି? ଏତକ ଜାଣୁ ନା!

ପୂଝାରୀ — ଆଉ କଣ ସାଗୁଆତି ଖାଇବ?

ବାବାଜୀ — ହଁ ତା ହବ, ସେଇ ହେଲେ ଆମର ଢେର୍।

ପୂଝାରୀ — (ଦାମାପ୍ରତି) ମଲା! ଏ କଣ କହୁଚି, ମାଛଖାଏ ନା, ସାଗୁଆତି ଖାଏ।

ଦାମା — ବୁଝି ପାରିଲା ନାହିଁ ପରା।

ପୂଝାରୀ — ନ ବୁଝିଲା ନାହିଁ ଭଲ ହେଲା, ଦୋଷ ତାରି ମୁଣ୍ଡରେ ରହିଲା। (ବାବାଜୀ ଆଗରେ ପୂଝାରୀ ପତ୍ର ପକାଇ ଦାମା ସହିତ ପ୍ରସ୍ଥାନ)

ବାବାଜୀ — ପୂଝାରୀ ବାବା! ପତ୍ର ଦେଇ ଏତେବେଳଯାଏ କୁଆଡ଼େ ରହିଲ ଯେବେ କିଛି ନାହିଁ ତେବେ କହିଦିଅ ଆମେ ଚାଲିଯିବା। (ପୂଝାରୀ ଖୋଟିଏ ହାଣ୍ଡିରେ ପଇମ ଘୋଡ଼ାଇ ପ୍ରବେଶ)

ପୂଝାରୀ — ହେଇ ମହାରାଜ ଆଣିଲି (ହାଣ୍ଡି ପତ୍ର ପାଖରେ ରଖି) ମହାରାଜ ! ଏଥିରେ ଉତ୍ତମ ପ୍ରସାଦ ଅଛନ୍ତି ଆପଣ ସ୍ୱହସ୍ତେ ପରଷି ସେବା କରନ୍ତୁ ।

ବାବାଜୀ — ଆଚ୍ଛା ବାବା (ପଲମ କାଢ଼ନ୍ତେ ଗୋଟିଏ କୁକୁଡ଼ା ବାହାରିଲା, ବାବାଜୀ ଚମକିଉଠି) ଇଏ କଣରେ ବାବା !

ପୂଝାରୀ — ମହାରାଜ, ଆପଣ ସାଗୁଆଡି ସ୍ୱୀକାର କରିବାରୁ ମୁଁ କୁକୁଡ଼ାଟିଏ ଗୋଟାପଣେ ରୋଷ୍ଟ (କବାବ) କରି ଆଣିଥିଲି, ସେହିପରି ବାବୁ କେବେ କେବେ ଖାଆନ୍ତି । ସେ ତ ଆପଣଙ୍କ ହାତ ଲାଗିଲା ମାତ୍ରକେ ପ୍ରାଣପାଇ ବଞ୍ଚି ଉଠିଲା, ମୋର କି ଦୋଷ ? ମହାରାଜ ଆପଣଙ୍କର ଅପାର ମହିମା ! କୁକୁଡ଼ାକୁ ମାରି ରାନ୍ଧିଥିଲି ସେ ପୁଣି ଜୀଇ ଉଠିଲା ! ଓହୋ ! ଏପରି ତ କେବେ ଦେଖା ନ ଥିଲା ।

(ରଘୁ ସିଂହର ପ୍ରବେଶ)

ବାବାଜୀ — ଆରେ ତୁ ସାଗ ତିଅଣ କହି ଜୀଅନ୍ତା କୁକୁଡ଼ାଟାଏ ଆଣିଦେଲୁ ପୁଣି ମିଥ୍ୟାକଥା ଗୁଡ଼ାଏ କହୁଚୁ ଆହୁରି ଟାହୁଲି କରୁଚୁ । କ୍ଷୁଧାର୍ତ୍ତକୁ ସତେଇଲୁ, ଆରେ ତୁ ତ ବଡ଼ ଅଜ୍ଞାନୀ !

ରଘୁ — ସତେ ପୂଝାରି ତୁମେ କଣ କଲ, ଏହା କି ମଣିଷ କରେ ! କ୍ଷୁଧାର୍ତ୍ତ ସାଧୁକୁ ସତେଇଲ ! ଓହୋ ଏଡ଼େ ଅଜ୍ଞାନୀ ! ତୁମେ ବ୍ରାହ୍ମଣଟିକି ? ତୁଚ୍ଛା ପଇତା ପକେଇ ବ୍ରାହ୍ମଣ, ନା ଧର୍ମ କର୍ମରେ ବ୍ରାହ୍ମଣ ? କଳିକାଳର ବ୍ରାହ୍ମଣ ଗୁଡ଼ାକ କଣ ହେଲେଣି ! ଧର୍ମ କର୍ମକୁ ମହତ ମର୍ଯ୍ୟାଦାକୁ ଟିକିଏ ଦୃଷ୍ଟି ନାହିଁ, ଗାଳି ମାଡ଼ ଖାଇବାର ଦୁଆରେ ପତର ପକେଇଲେଣି, ବାର ଅନୀତି କଲେଣି ! ଠାକୁର ପିଣ୍ଡାକୁ କୌଠୁ କୁକୁଡ଼ାଟାଏ ଆଣିଲ ? ତୁମର ଜାତି ରହିଲାଟିକି ? ଏଥିରେ ଆଉ ଦେବତା ରହିବେଟିକି ?

ପୂଝାରୀ — ବାବୁ ଯେ କୁକୁଡ଼ା ପାଇଦିଅନ୍ତି, ମୁଁ ଛୁଇଁଲି ବୋଲି ଦୋଷ ହେଲା । କୁକୁଡ଼ା ଯେ ରାନ୍ଧିବାକୁ ପଡ଼େ !

ରଘୁ — (କୁପିତ ହୋଇ) କଣ କହିଲୁ ଫେରତ କହ, ବାବୁ କୁକୁଡ଼ା ଖାନ୍ତି ! ମୁଁ କଣ ବାବୁଙ୍କୁ ଜାଣେ ନା ? ତାଙ୍କର ପୂଜାପାଠି ଦାନ

ଧ୍ୟାନ କେତେ, ବ୍ରାହ୍ମଣ ବୈଷ୍ଣବ ସମସ୍ତେ ତାଙ୍କର ପ୍ରଶଂସା କରନ୍ତି, ତୁ ତାଙ୍କୁ ନିନ୍ଦୁଚୁ ! ସେ କଣ ଇଙ୍ଗରେଜିପଢ଼ା ବାବୁ କି ? ଏବେତ ସେମାନଙ୍କ ମଧ୍ୟରେ ପୁଣି କଲିକତାରେ କେତେ ମଦ ମାଁଉସ ଖାଉ ନାହାନ୍ତି, ଭାରୀ ଜ୍ଞାନୀ ଓ ଧର୍ମୀ ହୋଇ ବାହାରିଚନ୍ତି। ଏପରି କେବେ ଦେଖା ନ ଥିଲା, ତୋରିପରି ମୂର୍ଖ ଅଜ୍ଞାନୀ ପରା। ବାବୁଙ୍କର କେଉଁଗୁଣକୁ ତୁ ସରି କହିଲୁ, ସେ ଗୋଟାଏ ଅଧେ ଉଣାକଥା କଲେ ବୋଲି ତୁ ସେଇୟା କରିବୁ ! ଦେଖ ମହାରାଜ ! ଆପଣଙ୍କୁ ଏତେ ସତେଇଲା ପୁଣି ବାବୁଙ୍କର ନିନ୍ଦା କରୁଚି, ଚାଲନ୍ତୁ ବାବୁଙ୍କୁ ଜଣେଇବା।

ବାବାଜୀ ନାହିଁ, ବାବା, ବାବୁଙ୍କୁ ଜଣେଇବା ନାହିଁ। ବାବୁ ଶୁଣିଲେ ରାଗ ହୋଇ ତାକୁ ଦଣ୍ଡିବେ ବା ବାହାର କରିଦେବେ, ଗରିବ ବିଚରା ମରା ପଡ଼ିବ। ସେମାନେ ମୂର୍ଖ, ମୁନିବର କିଛି ଦୋଷ ଦେଖିଲେ ତାହା ଲୁଚେଇବା ଦୂରେ ଥାଉ ବଜାରରେ ବିକନ୍ତି ଓ ନିନ୍ଦା କରି ବୁଲନ୍ତି। ଆମେ ତାକୁ ବୁଝେଇ କହିଦେବା ସେ ଏପରି ଦୁଷ୍କର୍ମ ଆଉ କରିବ ନାହିଁ। ବାବୁଙ୍କୁ ଜଣେଇଲେ କଣ ହବ। ବୁଝିଲ ପୂଝାରି ବାବା ! କ୍ଷୁଧାର୍ତ୍ତଙ୍କୁ ସତେଇବା, ମୁନିବର ନିନ୍ଦା କରିବା ଓ ମିଥ୍ୟା କହିବା ବଡ଼ ଦୋଷ ଏବଂ ପାପ ଅଟେ। ଏଥିପାଇଁ ପରକାଳରେ ଦଣ୍ଡ ଭୋଗିବ। ଏପରି କୁକର୍ମ ଆଉ କେଭେ କରିବ ନାହିଁ। ବଡ଼ୁ ହବାବେଳେ "ମିଥ୍ୟା ଭାଷଣଂ ନ କର୍ତ୍ତବ୍ୟଂ" ଯେ ପ୍ରତିଜ୍ଞା କରିଥିଲ ତହିଁକି ଦୃଷ୍ଟି ରଖ। ସେତେବେଳର ଦଶ ପ୍ରତିଜ୍ଞା ନ ପାଳିଲେ ପ୍ରକୃତ ବ୍ରାହ୍ମଣ ହୋଇ ନ ପାରିବ।

ରଘୁ (ଅଶ୍ରୁପୂର୍ଣ୍ଣଲୋଚନେ) ଆହା ! କେଡ଼େ ଦୟାଳୁ କେଡ଼େ ବୋଧା ! ପୂଝାରି ତୁ କି ପୁରୁଷ ସଙ୍ଗରେ କି ବ୍ୟବହାର କଲୁ ରେ ! ତୋର ଶରୀର ଫାଟି ଯିବରେ ! (ବାବାଜୀ ପ୍ରତି) ମହାରାଜ ! ମୋ ବସାରେ ଚରଣ ପଡ଼ିଲେ ପାକଶାକର ଉଦ୍‌ଯୋଗ କରି ଦିଅନ୍ତି।

ବାବାଜୀ ନାହିଁ ବାବା ପାକ କରିବାତ ଆମକୁ ପର୍ବତ ପ୍ରାୟ। ମଠକୁ ଯାଉଚେଁ, ସେହିଠାରେ ମୁଠିଏ ପ୍ରସାଦ ପାଇବା। ତୁମେ ମନରେ

କିଛି ଦୁଃଖ ନ କର। ଆନନ୍ଦ ରହ ବାବା! ପୂଜାରି ବାବା! ଦୁଃଖ ନ କରି ଆମ କଥାକୁ ଗୁରୁବଚନ ତୁଲ୍ୟ ମାନବ ଆଜ୍ଞା, ଯାଉଚେଁ। ମଙ୍ଗଳ ହେଉ।

(ବାବାଜୀଙ୍କର ପ୍ରସ୍ଥାନ)

ରଘୁ ଦେଖିଲ ପୂଜାରି! ରାଗ ଅହଂକାର ଟିକିଏ ନାହିଁ। ତୁମକୁ ପୁଣି କଲ୍ୟାଣ କରି ଗଲେ।

ପୂଜାରୀ ହଁ ହଁ ଅତି ଉତ୍ତମ ସାଧୁ, ଦେବତା ସମାନ ତ। ତାଙ୍କୁ ଯା ମୁଁ ସନ୍ଦେହିଲି! ସେ ପତର ଉପରୁ ଉଠିଗଲେ, ବଡ଼ ଦୁଷ୍କର୍ମ କଲି। ମତେ କି କୁବୁଦ୍ଧି ଘଟିଲା, ଏତେବେଳେ ମନ ବଡ଼ ବିକଳ ହଉଚି, ମୁଁ ଚଣ୍ଡାଳ କଣ କଲି, ମୋର ତ ଭଲ ଦଶା ନାହିଁ!

(ସ୍ୱହସ୍ତେ ଚପେଟାଘାତ ଓ ଅଶ୍ରୁପାତ)।

# ତୃତୀୟ ଅଙ୍କ

ରଙ୍ଗଭୂମି-କସ୍ମିନ୍ ମଠର ଦାଣ୍ଡଘର।
(ବାବାଜୀଙ୍କର ପ୍ରବେଶ)

ବାବାଜୀ  ମଠରେ କେହି ଅଛ ବାବା!
(ବୀରସିଂହର ପ୍ରବେଶ)

ବୀର  ଜଣ୍ ମହାରାଜ! ଦଣ୍ଡବତ୍।

ବାବାଜୀ  ମଙ୍ଗଳ ହଉ ବାବା ଭୋଜନ ମାଗୁଚେଇଁ।

ବୀର  ମହନ୍ତ ମହାରାଜ ଘଇଙ୍କଲାଗି ହୋଇଚନ୍ତି, ଏତେବେଳେ ତାଙ୍କ ଛାମୁକୁ ଯାଇପାରିବି ନାହିଁ, ଅଧିକାରୀ ଆସୁଚନ୍ତି ତାଙ୍କୁ ଭୋଜନ ମାଗିବ। ମହାରାଜ! ମୁଁ ତ ମହନ୍ତଙ୍କ ଆଶାବରଦାର ମୋ ଦେହି କଣ ହବ।
(ଅଧିକାରୀଙ୍କର ପ୍ରବେଶ, ଝୋଲୀ ହାତରେ, ନାମାବଳୀ ଦେହରେ, ତିଳକ ଛାପା ମସ୍ତକରେ)

ଅଧିକାରୀ : ଗୌରାଙ୍ଗ ହେ ଗୌରାଙ୍ଗ ହେ।

ବାବାଜୀ  ଜୟ ଜୟକାର ଅଧିକାରୀ ବାବା! କ୍ଷୁଧାର୍ତ୍ତ ଅଭ୍ୟାଗତର କିଛି ଚର୍ଚ୍ଚା ହବ?

ଅଧିକାରୀ : (ମାଳତୀର ଆଗମନ ଦେଖି) ମହାରାଜ! ଦ୍ୱାରେ ବସ ଭିତରକୁ କିପରି ଆସିଲ।

ବାବାଜୀ  ଆଜ୍ଞା ବାବା-(ଦ୍ୱାରେ ବସିଲେ)
(ମାଳତୀର ପ୍ରବେଶ)

ଅଧିକାରୀ : ଆଜି ଏତେ ଡେରି କାହିଁକି।

ମାଳତୀ : ନା, ମୁଁ କେତେବେଳୁଁ ଆସିଲିଣି।

ଅଧିକାରୀ : କାହିଁ ମୁଁ ତ ତୋତେ ଦେଖିଲି ନାହିଁ, କୌଠି ଥିଲୁ?

ମାଳତୀ : (ହସି ହସି) ମହନ୍ତଙ୍କ ପାଖରେ ଥିଲି ପରା, ଗୋଡ଼ ଘଷି ଦଉଥିଲି। ହେଇତି ଏ ଶାଢ଼ୀ ଆଜି ମହନ୍ତ ଦେଲେ (ଶାଢ଼ୀ ଅଞ୍ଚଳରୁ ବାହାର କରି) ଆଜ୍ଞା ଶାଢ଼ୀ ସାତ ଟଙ୍କାକୁ କିଣା ହେଇଚି।

ଅଧିକାରୀ : ଆଚ୍ଛା, ବେଶ୍ ଖୁସିର କଥା। ନୂଆ ଶାଢ଼ୀ ନ ପିନ୍ଧି ନୁଚେଇଚୁ କାହିଁକି ? ତୁ କଣ ଚୋରଣୀ କି ?

ମାଳତୀ ନାହିଁ ମ, ଆଜି ବାର ନୁହେ ପରା ! ପିନ୍ଧିବା ପାଁଇ ମହନ୍ତ କହୁ ନ ଥିଲେ କି ? ବାର ନ ଥିବାରୁ ପିନ୍ଧିଲି ନାହିଁ, ଗୁରୁବାର ଦିନ ପିନ୍ଧି ଆସିବି।

ଅଧିକାରୀ : ହଉ ତେବେ ରୋଷଘରଆଡ଼କୁ ଆ ପ୍ରସାଦ ପାଇବୁ

ମାଳତୀ ମୁଁ ଘରକୁ ଯାଉଚି ଶାଢ଼ୀ ଘରେ ରଖି ଆସେଁ।

ଅଧିକାରୀ : ମ, ତୋ ଶାଢ଼ୀ କିଏ ଛଡ଼େଇ ନଉଚି କି ? ପ୍ରସାଦ ଶୁଖିଯିବେ, ଆଗେ ପ୍ରସାଦ ପାଇବୁ ଆ, ପଛେ ଘରକୁ ଯିବୁ, ଏକାନ୍ତକେ କାମ ସାରିକରି ଯା।

ମାଳତୀ ତେବେ ପ୍ରସାଦ ଦିଅ ଘରକୁ ନେଇଯିବି। ମୁଁ ଅଭିକା ଖାଇବି ନାହିଁ।

ଅଧିକାରୀ : କାହିଁକି କହନି ? ମୋ ରାଣଟି ସତ କହିବୁ।

ମାଳତୀ (ହେଟବଦନେ) ଆଜି ମୁଁ ଗୋଟିଏ ଦୋଟି ପିଠା ଖାଇ ଆସିଚି, ପ୍ରସାଦ ପଛେ ପାଇବି।

ଅଧିକାରୀ : ଏହିସିନା ! ଆ ଅଳ୍ପ ମୁଠିଏ ଖାଇବୁ ଆଉ ମୁଠିଏ ତୋ ମା ପାଇଁ ନେଇଯିବୁ। ଆ ଆ ମୋ ରାଣ।

ମାଳତୀ : ଚାଲ ଯାଉଚି, ଏତେ ରାଣ କାହିଁକି ପକଉଚ।

ଅଧିକାରୀ : (ବୀରପ୍ରତି) ଆମେ ଯାଉଁ, ତୁ ବାବାଜୀକୁ କହିଦବୁ ପଙ୍ଗତ ବଢ଼ିଲାଣି, ଆଉ କିଛି ମିଳିବ ନାହିଁ। (ଅଧିକାରୀ ''ଗୌରାଙ୍ଗ ହେ'' ପୁନଃପୁନ ଉଚ୍ଚାରି ମାଳତୀ ସହିତ ପ୍ରସ୍ଥାନ)

ବୀର (ସ୍ୱଗତ) ଓହୋ ଧର୍ମ ଉଠିଗଲା !

(ରାମଦାସର ପ୍ରବେଶ, ଗଞ୍ଜା ଖାଇ ଖାଇ)

ବାବାଜୀ (ରାମପ୍ରତି) ମହାରାଜ ! ଅଧିକାରୀ କିଛି ଉତ୍ତର ନ ଦେଇ ଚାଲିଗଲେ, ଆମ କଥା କିଛି ହବ ?

ରାମ (ଗଞ୍ଜା ଚିଲମ ବଢ଼ାଇ) ନିଅ ମହାରାଜ !

ବାବାଜୀ ଆମର ତା ହୁଏନା, ସେ ସବୁର ଆମେ କିଛି ଧାରୁନା।

ରାମ ଏ ସବୁ କିଛି ହୁଏ ନା ! ଆଉ ତେବେ କଣ ହୁଏ ? ଆଉ ତୁମେ କି ସାଧୁ ! (ବୀର ସିଂହ ନିକଟକୁ ଆସି) ଏ ବାବାଜୀ କିଛି ନୁହେଁ ତୋରିପରି ଉଲ୍ଲୁ ଜଣେ।

ବୀର — ହଉ, ଆମର ତା ସନ୍ମତ ! ତୁମେ ଏ ବାବାଜୀ ପାଇଁ ମୁଠିଏ ପ୍ରସାଦର ଉଦ୍‌ଯୋଗ କରି ଦିଅ। ଅଧିକାରୀତ ମନା କଲେ ତୁମେ ଭଲା ଦୟା କର। ଉଲ୍ଲୁ ବ୍ୟକ୍ତି ଦୟାର ପାତ୍ର, ଘୃଣାର ପାତ୍ର ନୁହେଁ।

ରାମ — ସତ୍ୟ, କିନ୍ତୁ ଚାରି ପାଞ୍ଚଜଣ ବାଉରାଣୀ କଂସା ଘେନି ଆସି ବଗିଚାରେ ବସିଲେଣି, ସେଠାକୁ ହରି ଦାସ ଗୋବିନ୍ଦ ଦାସ ହରିକା ଗଲେଣି। ସେମାନଙ୍କୁ ପ୍ରସାଦ ଦେଲା ଉତ୍ତାରେ କିଛି ବଳିଲେ ବାବାଜୀଙ୍କୁ ଆଣି ଦେବି। ସେମାନେ ମଠର ଆଶ୍ରିତ ଓ ସବୁ କାମରେ ହାଜର ସେମାନଙ୍କ ପରି ମନଯୋଗେଇ କେହି ଖଟିବ ନାହିଁ, ସେମାନଙ୍କୁ ଆଗେ ନ ଦେଇ ପାଇତୁ ବାବାଜୀଙ୍କୁ କିଏ ଦବ ? ମୁଁ ଦୟା କଲେ କଣ ହବ ମୋ କଥା ତ କେହି ଶୁଣିବେ ନାହିଁ। ତୁ କିଛି ନ ଜାଣିଲା ପରି ଯେ କହୁଚୁ।

(ରାମଦାସର ପ୍ରସ୍ଥାନ)

ବାବାଜୀ — ଆଶାଦାର ବାବା ! କିଛି ଆଶା ଅଛି ନା ନିରାଶ ହୋଇ ଯିବା।

ବୀର — ବସନ୍ତୁ ମହାରାଜ ! ମୁଁ ଆପଣଙ୍କ ପାଁଇ ଉଦ୍ୟମ କରୁଚି।

(ଜାମୁନୀ ବଷ୍ଟମାଣୀର ପ୍ରବେଶ ଝୋଲୀ ହାତରେ)

ଜାମୁନୀ — ରାଧେ ! ସିଂହେ ଅଧିକାରୀ କାହାନ୍ତି ?

ବୀର — ଅଧିକାରୀ ରୋଷଘରଆଡ଼େ ଅଛନ୍ତି।

ଜାମୁନୀ — ଆଜି କଣ ହେଲା କି ମୋ ପ୍ରସାଦ ଏତେବେଳଯାଏ ପଠେଇ ଦେଲେ ନାହିଁ। ଏ ବାବାଜୀଟା ଖାଇଲା କି ?

ବୀର — ନା ତୋ ପ୍ରସାଦ ଅଛି, ବାବାଜୀଙ୍କୁ କିଏ ପଚାରୁଚି।

ଜାମୁନୀ — ଛିଆକର ! ଏଇଟାକୁ ବସି ପଚାରିବ। ଶୁଣିଲା ମୁହାଁଟାଏ, ପ୍ରେମ ଭାଗ କିଛି ନାହିଁ।

ବୀର — ହଁ, ଝୋଲୀ ନାହିଁ ପ୍ରେମ କାହୁଁ ଜାଣିବ।

ଜାମୁନୀ — (ହସି ହସି) ଦୁର୍ ! ତୋର ସବୁବେଳେ ଏଇକଥା ନ ଯାଏ। ତୋ ମୁହଁରେ ଯେବେ ପୋକ ନ ପଡ଼ିବ !

ବୀର — କି ପୋକ, ଝୋଲିର ପ୍ରେମ ପୋକ ?

ଜାମୁନୀ — ଛଣ ପାପ କଥାଗୁଡ଼ାକ କହୁ। କୃଷ୍ଣ କୃଷ୍ଣ କୃଷ୍ଣ!

ବୀର — "ହାଣ୍ଡିରେ ଖାଏ ଗୋଡ଼ରେ ପଡ଼ିଲେ ଗାଧୋଇ ଯାଏ।"

ଜାମୁନୀ — (ହସି ହସି) ଏବେ କେତେ ରଙ୍ଗରେ କଥା କହି ଆସିଲାଣି! ହଉ ହଉ, ଆଖଉ ଆଖଉ ପାଖେଇବୁ ଯେ।

ବୀର — ମୋଠି ସେପାଠ ନାହିଁ, ଯା ଯା, ଅଧିକାରୀ ପାଖକୁ ଯା, ପ୍ରସାଦ ପାଇବୁ।

(ଜାମୁନୀ ବିରସ ବଦନେ ରାଧେ ରାଧେ ଉଚ୍ଚାରି ରୋଷଘରକୁ ଗମନ)

ବାବାଜୀ — ଆଶାଦାରବାବା! ଆଉ କେତେ ବିଳମ୍ବ?

ବୀର — ଟିକିଏ ରୁହ ମହାରାଜ! ମୁଁ ଯାଇଁ ମହନ୍ତ ମହାରାଜଙ୍କୁ ଜଣାଏଁ।

(ବୀର ସିଂହର ପ୍ରସ୍ଥାନ। ମହନ୍ତ ଝୋଲୀ ଘେନି ବୀର ସହିତ ପ୍ରବେଶ)

ମହନ୍ତ — (ବୀରପ୍ରତି) ବାବାଜୀଟାଏ, ତୁ କିପରି କହିଲୁ ଜଣେ ଉତ୍ତମ ବଷ୍ଟମାଣୀ ଖାଇବାକୁ ମାଗୁଚି।

ବୀର — ନାହିଁ ମହାରାଜ! ବଷ୍ଟମାଣୀ କହି ନାହିଁ, ମୁଁ ଜଣାଇଲି ଜଣେ ଉତ୍ତମ ବଷ୍ଟମ ଆସି ଖାଇବାକୁ ମାଗୁଚି।

ମହନ୍ତ — ଆମକୁ ବଷ୍ଟମାଣୀ ପରି ଶୁଭିଲା। ବୀର! ତୁ ଆମକୁ ତୁଚ୍ଛାକୁ ଦଉଡ଼େଇଲୁ ହର୍ଷ ବିଷାଦ କରିଦେଲୁ ଆଚ୍ଛା! ଭଲ କରି ଚିଲମେ ଗଞ୍ଜା ସାଜ୍, ଗୁଲାବ ପାଣିରେ ଗଞ୍ଜା ମଳିବୁ, ଆଚ୍ଛା ମସଲା ଦେଇ ଭାଙ୍ଗ ଘୋଟ୍। ହରିଦାସକୁ କହିଦେ ଜଳଖିଆ ପାଇଁ ସର ଓ ମୋହନଭୋଗ ଚଞ୍ଚଳ କରିବ ଚାରିଟାବେଳେ ଓକୀଲ ବସାକୁ ଯିବା। ବାବାଜୀକୁ ମନା କରିଦେ, ଏତେ କୁଆଡ଼ୁ ଆସୁଚନ୍ତି ରଖିଦେବେ ନାହିଁ।

ବୀର — ଆଚ୍ଛା ମହାରାଜ। ସବୁ କରୁଚି ପଲଙ୍କକୁ ଯିବା ହେଉନ୍ତୁ।

(ମହନ୍ତଙ୍କ ପ୍ରସ୍ଥାନ। ରାମଦାସର ପ୍ରବେଶ ଗଞ୍ଜା ମଳି ମଳି)

ବୀର — ବାବାଜୀ ପାଁଇ ପ୍ରସାଦ ମୁଠିଏ ହେଲା ନା?

ରାମ — ନା, ହୋଇ ପାରିଲା ନାହିଁ। ସେମାନଙ୍କୁତ ପ୍ରସାଦ ଅଣ୍ଟିଲା ନାହିଁ। ଏବେ ଜଣ ଆଗ ଭୋଗରାଗ ଅଛି! ପୁଣି କାଲିଠାରୁ ସେରେ ଚାଉଳ ଊଣା ହୋଇଚି, ଠାକୁରଙ୍କ ପେଟ କାଟ,

ଅଭ୍ୟାଗତକୁ କିଏ ପଚାରେ। ଗଞ୍ଜା ଯେତେ ଚାହଁ ମୁଁ ଦେଇପାରେଁ, ସେ ତ ତଦ୍‌ଯୋଗ୍ୟ ନୁହେ! ଆମକୁ ଗଞ୍ଜା ଅଫିମ ମିଳିଲେ ଅନ୍ନ ହେଲେ କେତେ ନ ହେଲେ କେତେ। ତୁ ସେ ସବୁର ମାହାତ୍ମ୍ୟ କଣ ବୁଝିବୁ।

(ରାମଦାସର ପ୍ରସ୍ଥାନ)

ବୀର　　(ବାବାଜୀ ପ୍ରତି) ମହାରାଜ! ପ୍ରସାଦ ନାହିଁ ମୁଁ ବଡ଼ ବୁଦ୍ଧି ହୁଡ଼ିଲି, ଅକାରଣ ଆପଣଙ୍କୁ ଅଟକାଇଲି। ମୋ ଦୋଷ କ୍ଷମା କରିବା ହେବ। ମୋଠି ପଇସାଟିଏ ଅଛି ଅଙ୍ଗୀକାର କଲେ ଦିଅନ୍ତି।

ବାବାଜୀ　　ନାହିଁ ବାବା ତୋର କି ଦୋଷ, ତୁ ଅଭ୍ୟାଗତ ପାଇଁ ଅନେକ ଯତ୍ନ କଲୁ। ଏଥି ମଧ୍ୟରେ ତୁ ହି ଜଣେ ମନୁଷ୍ୟ, ଆଉ ସମସ୍ତେ ଅମନୁଷ୍ୟ। ଅହୋ! କି ଦୁରାଚାର, ମଠରେ ଏପରି ବ୍ୟବହାର! ତୋ ପଇସା ଥାଉ, ତୋ ପ୍ରତି ଆମେ ଅତି ସନ୍ତୁଷ୍ଟ। ଏ ସ୍ଥାନ ତୋର ଯୋଗ୍ୟ ନୁହେଁ।

ବୀର　　କଣ କରିବି ମାହାରାଜ! ପେଟ ପାଇଁ ଏଠାରେ ପଡ଼ିଚି। ଆମ କଥା ଯେ କହିଲ ଆମେ ଦୁଃଖୀ ଗୃହିଲୋକ; ପିଲା ବାଲକଙ୍କ ଚିନ୍ତାରେ ଦିନ ଯାଏ। ସେମାନଙ୍କର ତ ସେ ଚିନ୍ତା ନାହିଁ, ''ପୋଲାରେ ଖାଇ ମେଲାରେ ଗଡ଼ଗଡ଼ଉଚନ୍ତି, ମନଇଚ୍ଛା ମଉଜ କରୁଚନ୍ତି''। ଏଇଥି ପାଇଁ ତ ସେମାନଙ୍କ ବାବାଜୀ ହବାର ଭାବ ଭକ୍ତି କିଛି ନାହିଁ ଯେ। ପୁଣି ଗୋଟିଏ ଆଚମ୍ବିତ କଥା ଏହି ଯେ କେହି କେହି ଝୋଲିଧାରୀ କହନ୍ତି, ଗୌରାଙ୍ଗ ମତରେ ''ସ୍ୱକୀୟା ପରକୀୟାର'' ବିଧି ଅଛି। ପରକୀୟା ନ ହେଲେ ପ୍ରେମ ଉପୁଜିବ ନାହିଁ ମହାରାଜ! ଏହା କଣ ସତ?

ବାବାଜୀ　　ନା ନା, ଏହା କିପରି ହୋଇପାରେ। ମହାତ୍ମା ଚୈତନ୍ୟଙ୍କର ଅନ୍ୟନାମ ଗୌରାଙ୍ଗ, ସେ ପ୍ରେମ ଧର୍ମ ପ୍ରଚାର କରିଚନ୍ତି। ତାଙ୍କ ତୁଲ୍ୟ ଈଶ୍ୱରପ୍ରେମୀ ଅନ୍ୟ କେହି ହବାର ବିରଳ କିନ୍ତୁ ତାଙ୍କର ତ ପରକୀୟା ନ ଥିଲା, ବରଂ ସେ ସ୍ତ୍ରୀ ସମ୍ପର୍କ ବିବର୍ଜିତ ସନ୍ନ୍ୟାସ ଧର୍ମ ଗ୍ରହଣ କରିଥିଲେ। ପରକୀୟା ବିନା ତାଙ୍କର କିପରି ପ୍ରେମ ଉପୁଜିଲା। ପରକୀୟା ମତଟି କେତେକ

ଲମ୍ପଟ ଗୋସ୍ୱାମିଙ୍କର ସ୍ୱକଳ୍ପିତ ମତ ଅଟଇ। ତାହା ଶାସ୍ତ୍ରୋକ୍ତ କିମ୍ବା ଚୈତନ୍ୟଙ୍କର ମତ ନୁହେଁ। ପରକୀୟା ମହାପାପ ଓ ପାପରୁ ପବିତ୍ର ପ୍ରେମ ଉପୁଜି ନ ପାରେ। ତୁ ଏଥିରେ ମତି ଦେବୁ ନାହିଁ ବାବା। ଆଉ ଝୋଲୀ ଯେ ଦେଖୁଚୁ ଏଥକୁ ତପ ଜପ ଭକ୍ତିପୂର୍ବକ ଗୋପନରେ କରିବାର ଶାସ୍ତ୍ରରେ ଲେଖେ, କଥାରେ କହନ୍ତି "ଏ ହାତ ପୂଣ୍ୟ ଯେପରି ସେ ହାତ ନ ଜାଣେ।" ଝୋଲୀ ଘେନି ସକଳ ସମୟରେ ସକଳ ସ୍ଥାନରେ ବୁଲିବା ଏଥିର ବିପରୀତ ଅଟେ, ତାହା କେବଳ ଲୋକ ଦେଖାଣି। ସେଥିରୁ କି ଫଳ "ମନରେ ନାହିଁ ତ ମାଳିରେ ନାହିଁ। ମାଳି ଭଜି ଭଜି ପାଇବୁ କାହିଁ।" ମନଇ ମୂଳ। "ରାମରାମ୍ ସବ୍‌କୋହି କହେ ଠକ୍ ଠାକୁର୍ ଆଓର୍ ଚୋର୍। ବିନା ପ୍ରେମସେଁ ରିଝେ ନହି ତୁଳସି ନନ୍ଦକିଶୋର୍।" ଆହୁରି ଏକ ଦୋହାରେ କହିଚନ୍ତି। "ମନ୍‌କା ଫେରତ ଜନମ୍ ଗୟା ନ ଗୟା ମନ୍‌କା ଫେର୍। କରକା ମନ୍‌କା ଛୋଡ଼ କର୍ ମନ୍‌କା ମନ୍‌କା ଫେର୍।" ଏଥିରେ ଅର୍ଥ ବୁଝିପାରିଲୁ ନାହିଁ ପରା। ମାଳି ଫେରାଉ ଫେରାଉ ଜନ୍ମ ଗଲା କିନ୍ତୁ ମନର ଫେର ନ ଗଲା ଅତଏବ ହାତର ମାଳି ଛାଡ଼ି ମନର ମାଳି ଜପ।

ବୀର — ଠିକ କଥା ମହାରାଜ। ଏ ବିଷୟରେ ମୋର ବଡ଼ ସଂଶୟ ଥିଲା, ଆଜି ଆପଣଙ୍କ ଯୋଗେ ତାହା ଦୂର ହେଲା ଆଜି ବଡ଼ ଜ୍ଞାନ ପାଇଲି, ଧନ୍ୟ ଆପଣଙ୍କୁ! ଜଣେ ସାଧୁ ଆପଣଙ୍କୁ ଦେଖିଲି, ବର୍ତ୍ତମାନ ଆପଣ ଯିବା ହେଉନ୍ତୁ ମୁଁ କାମକୁ ଯାଉଚି। (ଭୂମିଷ୍ଠ ପ୍ରଣାମ)

ବାବାଜୀ — ମଙ୍ଗଳ ହଉ ବାବା, ତୋର ଏହିପରି ସୁମତି ଥାଉ।

ପ୍ରସ୍ଥାନ

# ଚତୁର୍ଥ ଅଙ୍କ

ରଙ୍ଗଭୂମି-ନଦୀକୂଳସ୍ଥ ତୋଟା ।

(ଜଣେ ମଦତୀ ଚୋରର ପ୍ରବେଶ)

ଚୋର (ସ୍ୱଗତ) ବାଃ କିସୁନ୍ଦର ମୃଗଛାଲଟିଏ ପଡ଼ିଚି ! କେହି ବାବାଜୀର ହବ ପରା । ଯାହାର ହଉ "ଅଜଗରକୁ ଦାତାରାମ" ମୋର ଚାରି ଦିନର ମଦତ ଚଳିଯିବ ।

(ଚୋର ମୃଗଛାଲ ଘେନି ଯିବା ସମୟରେ ବାବାଜୀଙ୍କର ପ୍ରବେଶ । ଚୋର ତାଙ୍କୁ ଦେଖି ଛାଲ ଫିଙ୍ଗି ପଳାୟନ)

ବାବାଜୀ ଆରେ ବାବା ନେଇଥିଲୁ ତ, ଫୋପାଡ଼ି ଦେଇ ଯାଉଚୁ କାହିଁକି ? ତୋର ସେଥିରେ ଲୋଭ ଜନ୍ମିଚି, ଯା ନେଇ ଯା, କିଛି ଭୟ ନାହିଁ । ଆମେତ ତାହା ଆଉ ନବା ନାହିଁ, ତୁ ନେଇଯା ।

(ଚୋର ଆନନ୍ଦିତ ହୋଇ ଛାଲ ଘେନି ପଳାଇଲା ଓ ବାବାଜୀ ତଳେ ବସି ଧ୍ୟାନ ଭଜନ କଲେ । ସନ୍ଧ୍ୟା ସମୟରେ ଢେମୀ ଓ ରାଧୀ ପ୍ରବେଶ ହୋଇ ଫଳ ପୁଷ୍ପ ପୂର୍ଣ୍ଣ ଡାଲାଟିଏ ବାବାଜୀଙ୍କୁ ଭେଟି, ଓଳଗି ହେଲାରୁ)

ବାବାଜୀ : ମଙ୍ଗଳ ହଉ ମାତା, ତୁମେମାନେ କୁଆଡ଼େ ଆସିଲ ?

ଢେମୀ : ଆପଣଙ୍କ ଚରଣ ସେବାକୁ ଆସିଲୁଁ ।

ବାବାଜୀ : ତୁମେମାନେ କିଏ ?

ଢେମୀ : ଆମେ ମଙ୍ଗତ ଜନ, ସଙ୍ଗୀତ ବ୍ୟବସାୟ କରୁଁ ।

ବାବାଜୀ : ତୁମେ ସଙ୍ଗୀତ ଜାଣ, ଆଚ୍ଛା ଗୋଟିଏ ଭଜନ ଗାଇଲ ।

ଢେମୀ ଓ: ହଉ ମହାରାଜ ।

ରାଧୀ ଭଜନ-ରାଗିଣୀସିନ୍ଧୁ ତାଳ ଆଡ଼ ତାଳ (ଧମାର)

ବିଶ୍ୱପତି । କି ଦେଇ ତୋଷିବି ତୁମ୍ଭ ମତି ହେ ।
ଯେଣିକି କରଇଁ ମୁହିଁ ନିରୀକ୍ଷଣ ।
ତେଣେ ଦେଖେଁ କିଛି ନାହିଁ ମୋର ଧନ ।
ଅନ୍ନଜଳ ଫଳ ଫୁଲ ଜନ୍ତୁ ଜନ । ଅଟଇ ତୁମ୍ଭର କୀର୍ତ୍ତି ହେ ।

ବାଛିଚି ତୁମ୍ଭରି ଧନରୁ ଯେ ମନ,
କରିବି ତୁମ୍ଭର ପାଦେ ପୂନର୍ଦ୍ଧାନ।
ପାପେ ଅପବିତ୍ର ହୋଇଛି ବୋଲିଣ। ନ ବାର କରୁଛି ସ୍ତୁତି ହେ।
କରୁଣାସାଗର ନାମ ଯେ ତୁମ୍ଭର।
ଏ ପାମର ପ୍ରତି ବାରେ କୃପା କର।
ପବିତ୍ର କରିଣ ଘେନ ଦାନ ମୋର।
ହେଉ ଏ ପାପିର ଗତି ହେ।

ବାବାଜୀ — ଆଚ୍ଛା ଗାଇଲ ଆମେ ସନ୍ତୁଷ୍ଟ ହେଲୁଁ। ତୁମେମାନେ କାହିଁକି ଆସିଛ କହନି ?

ଢେମୀ — ମହାରାଜ! ଇଏ (ରାଧୀ) ବେରାମ ଅଛି ସେଥିପାଁଇ ଆସିଚୁଁ।

ବାବାଜୀ — ଆମେତ ବଇଦ ନୋହୁଁ, ବଇଦଠାକୁ ଯାଇ ଉତ୍ତମ ଚିକିତ୍ସା କର, ଅବଶ୍ୟ ଆରୋଗ୍ୟ ଲଭିବ।

ଢେମୀ — ନାହିଁ, ଚିକିତ୍ସାରେ କଣ ହବ, ସେପରି ଭଲ ବଇଦ କାହାନ୍ତି ଓ ତହିଁକି ଆମର କଉଡ଼ିବଳ କାହିଁ। ଆପଣଙ୍କର ଆଜ୍ଞା ହେଲେତ ରୋଗ ଏହିକ୍ଷୁଣି ଛାଡ଼ି ପଳେଇବ।

ବାବାଜୀ — ଯଦି ଭଲ ବଇଦ ନାହାନ୍ତି ତେବେ ଡାକ୍ତରଠାକୁ ଯାଅ, ଡାକ୍ତର ଅତି ଉତ୍ତମ ଚିକିତ୍ସା କରନ୍ତି। ଆମ ଆଜ୍ଞାରେ ରୋଗ କିପରି ଛାଡ଼ି ପଳେଇବ, ଏହାତ ଅତି ଅସମ୍ଭବ।

ଢେମୀ — କିଛି ଅସମ୍ଭବ ନୁହେ, ଆପଣଙ୍କର ମହିମାରେ ସବୁ ହୋଇପାରେ।

ବାବାଜୀ — ଆମର ମହିମା! ଆମେତ ମନୁଷ୍ୟ ମାତ୍ର ଆମର କି ମହିମା! ମହିମା କେବଳ ପରମେଶ୍ବରଙ୍କର। ଦେଖ ତାଙ୍କରି ମହିମାରେ ପୃଥିବୀ, ଚନ୍ଦ୍ର, ସୂର୍ଯ୍ୟ, ନକ୍ଷତ୍ର ଓ ଅସଂଖ୍ୟ ଜୀବ ସୃଷ୍ଟ ହୋଇଚନ୍ତି। ମନୁଷ୍ୟ ତ ଗୋଟିଏ ଘାସଗଛ ସର୍ଜନା କରି ନ ପାରେ।

ଢେମୀ — ଆପଣ ତ ଆମପରି ମନୁଷ୍ୟ ନୁହନ୍ତି, ଆପଣ ସିଦ୍ଧପୁରୁଷ ସାଧୁ ଆପଣଙ୍କ ପରି ସାଧୁଙ୍କର କରଣୀ କାଟେ।

ବାବାଜୀ — ଆମେ କି ସିଦ୍ଧପୁରୁଷ, ଆମେ କି ସାଧୁ। କେହି ସିଦ୍ଧପୁରୁଷ ହେଲେ ମଧ ତାହାର ଅଲୌକିକ ମହିମା କିପରି ହବ ?

ଢେମୀ — ନା, ମହାରାଜ! ହୁଏ, ଆଉ ଯାହା କଥା ଯେପରି ଆପଣଙ୍କ କଥା ଯାହା ଶୁଣିଚି ତାହା ଅତି ଚମତ୍କାର।

ବାବାଜୀ — କଣ ଶୁଣିଚ କହନି ?

ଜେମୀ — ମହାରାଜ ! ଆପଣ ଆଜି ସୁବଳ ବାବୁଙ୍କ ବସାକୁ ଯାଇଥିଲେ, ବାବୁ ଆପଣଙ୍କର ବଡ଼ ସମ୍ମାନ କଲେ। ତାଙ୍କ ପୂଜାରୀ ଦୁଷ୍ଟ ଓ ଗୁଣୀ ଅଟେ, ସେ ଆପଣଙ୍କ ବିଡ଼ିବାପାଁଇ ଗୋଟିଏ ହାଣ୍ଡିରେ ରନ୍ଧାମାଉଁସ ପୂରେଇ ପଲମ ଘୋଡ଼େଇ ଆପଣଙ୍କୁ ଆଣି ଦେଲା ଓ କହିଲା ଏଥିରେ ପ୍ରସାଦ ଅଛି ସେବା କରନ୍ତୁ। ଆପଣତ ସର୍ବଜ୍ଞ, ତାହା ଜାଣିପାରି କହିଲେ ଏଥିରେ ଯାହା ଅଛି ତାହା ଆମ ଖାଇବାର ନୁହେ ତାହା ତୋତେ ଖାଇବ। ଏହା କହି ପଲମ କାଢ଼ି ଦିଅନ୍ତେ ସେଥିରୁ କେଡ଼େବଡ଼ କୁକୁଡ଼ାଟାଏ ବାହାରି ପୂଜାରିକୁ ଏପରି ଖୁମ୍ପିଲା ଯେ ସେ ଛଟପଟ ହୋଇ ରଡ଼ି ଛାଡ଼ିଲା ତାହାର ମନ୍ତ୍ର ଯନ୍ତ୍ର କିଛି କାଟିଲା ନାହିଁ। ସେ ଯହୁଁ ଦୋଷ ମାନି ଆପଣା ଗାଲରେ ଚଟକଣା ଖାଇଲା ତହୁଁ ଆପଣ ତାକୁ କଲ୍ୟାଣ କଲ, ସେ ଥୟ ହେବା କୁକୁଡ଼ା କୁଆଡ଼େ ଉଡ଼େଇ ଗଲା।

ବାବାଜୀ — (ଉଚ୍ଚସ୍ୱରରେ ହସି) ମିଛ ମିଛ, କିଏ ଏହା କହିଲା ?

ଜେମୀ — ନା ମହାରାଜ ! ମିଛ କିପରି, ଆମେ କେତେ ଲୋକଠାରୁ ଶୁଣିଲୁଁ ଏକଥା ରାଇଜଯାକ ରଟି ଗଲାଣି, ଆପଣ ଲୁଚେଇଲେ କି ଲୁଚିବ। ଆମେ ଶୁଣି ଦଉଡ଼ି ଆସିଲୁଁ, ଜଣେ ବଙ୍ଗାଳିବାବୁ ମଧ ଆସିବେ ତାଙ୍କର ବାପ ବାତ ରୋଗରେ ତିନିମାସ ହେଲା ବିଛଣାରୁ ଉଠୁ ନାହାନ୍ତି, ଆମେ ପାପୀ ବୋଲି ଘୃଣା କରୁଚନ୍ତି କି ? ଆମେ ଅତି ଦୁଃଖୀ ନିରାଶ୍ରିତ, ଆମର କୌଣସି କୁଳ ନାହିଁ (ପାଦତଳେ ପଡ଼ି) ଦୋହି ମହାରାଜ ! ଆମ ଉପରେ ଦୟା କରନ୍ତୁ, କପଟ କରନ୍ତୁ ନା, ଆମେ କିଛି ଭୋଗ ଖର୍ଚ୍ଚା ଦବୁଁ ଯେ।

ବାବାଜୀ — ଉଠ ଉଠ ଆମେ କପଟ କରୁ ନାହୁଁ, ସତ କହୁଚୁଁ ଶୁଣ। ଆମେ ଅସମୟରେ ଭୋଜନ ମାଗିବାରୁ ସେ ଦୁଷ୍ଟ ପୂଜାରୀ ବିରକ୍ତ ହୋଇ ଗୋଟିଏ ହାଣ୍ଡିରେ ଜୀଅନ୍ତା କୁକୁଡ଼ାଟିଏ ପୂରେଇ ପଲମ ଘୋଡ଼େଇ ଆମ୍ଭକୁ ଆଣି ଦେଲା ଓ କହିଲା ଏଥିରେ ପ୍ରସାଦ ଅଛନ୍ତି ସେବା କରନ୍ତୁ। ଆମେ ପଲମ କାଢ଼ି କୁକୁଡ଼ାକୁ ଦେଖି ଚମକି ଉଠିଲୁଁ, ତହୁଁ ସେ ଟାହୁଲି କରି କହିଲା ; ଆପଣଙ୍କ ମହିମାରେ ମଲା ରନ୍ଧା କୁକୁଡ଼ା ବଞ୍ଚି ଉଠିଲା।

ତେତେବେଳେ କେହି ଭଲଲୋକ ପହୁଁଚି ପୂଝାରିକୁ ଭର୍ତ୍ସନା କଲେ ଓ ଆମେ ତାକୁ କେତେକ ଉପଦେଶ ଦେଇ ଚାଲି ଆସିଲୁଁ। ଏତିକି ସତ୍ୟ ଆଉ ସବୁ ମିଥ୍ୟା।

ରାଧୀ (ଜେମୀ ପ୍ରତି) ମଲା ! ନିର୍ଘାନଗାଗୁଡ଼ାକ କେମନ୍ତେ ଏତେ ମିଛ କଥା କହିଲେ ମ !

ଜେମୀ ହଉ ଏ କଥା ସିନା ମିଛ ହେଲା, ଆଉ ସତକଥା କେତେ ଅଛି। ସିଦ୍ଧପୁରୁଷଙ୍କର ମହିମା ହୁଏ।

ବାବାଜୀ ଯେଉଁମାନଙ୍କର ଚିତ୍ତ ସର୍ବଦା ଈଶ୍ୱରଙ୍କଠାରେ, ଈଶ୍ୱର ଛଡ଼ା ଯାହାଙ୍କର କିଛି କାର୍ଯ୍ୟ ନାହିଁ ବା ଚିନ୍ତା ନାହିଁ, ସେମାନଙ୍କୁ ସିଦ୍ଧପୁରୁଷ ଈଶ୍ୱରଙ୍କଠାରେ ଚିତ୍ତର ଯୋଜନକୁ ଯୋଗ କହି ଓ ଯାହାଙ୍କର ଏ ଯୋଗ ସିଦ୍ଧି ହୁଏ ତାଙ୍କୁ ସିଦ୍ଧପୁରୁଷ* ବୋଲି। ସେମାନେ ଈଶ୍ୱର ଲାଭ ପାଁଇ ଯୋଗ ସାଧନା କରନ୍ତି ଆପଣାର ମହିମା ପାଇଁ କରନ୍ତି ନାହିଁ କିମ୍ବା ମହିମା ହୁଏ ନା। ସେମାନେ ବିନୟୀ ଓ ନମ୍ର ହୁଅନ୍ତି ଓ ଯେଉଁ ଅବସ୍ଥାରେ ଥାନ୍ତି ତହିଁରେ ସେମାନେ ଅତି ସନ୍ତୁଷ୍ଟ ଓ ସର୍ବଦା ଆନନ୍ଦିତ।

ଜେମୀ ଯେଉଁ ବାବାଜୀମାନେ କରଣୀ କଟାନ୍ତି, ସେମାନେ କି ସିଦ୍ଧପୁରୁଷ ନୁହନ୍ତି ?

ବାବାଜୀ ସେମାନେ ଅର୍ଥଲୋଭୀ। କଉଡ଼ି ଉପାର୍ଜନ ପାଁଇ ସେମାନେ କରଣୀର ଛଟା କରନ୍ତି। ଦଣ୍ଡବତୀ କିମ୍ବା ଭୋଗ ବିନା ସେମାନଙ୍କଠାରୁ ଆଜ୍ଞା ବାହାରେ ନା। ସେମାନେ କଳ କୌଶଳେ ଓ ନାନାଦି ଉପାୟରେ କିଛି ଆଚମ୍ବିତ କଥା ଦେଖାଇ ଦିଅନ୍ତି ଅବୋଧ ଲୋକେ ତାହା ତାଙ୍କର ମହିମା ବୋଲି ମଣନ୍ତି। ଆମର କରଣୀ କଥା ଯେପରି ରଟିଚି ତାହା କେହି ଶଠ ସାଧୁ କପାଳକୁ ଘଟିଥିଲେ ସେ ଅନେକ କଉଡ଼ି ଉପାର୍ଜନ କରି ନିଅନ୍ତା। ଏହିପରି ସବୁ ଜାଣିବ, ସାଧୁ ଅସାଧୁ କୌଣସି ଲୋକର ଅଲୌକିକ ମହିମା ହୋଇ ନ ପାରେ, କାରଣ ତାହା ଈଶ୍ୱରଙ୍କର ନିୟମ-ବିରୁଦ୍ଧ।

---

* ଈଶ୍ୱରଙ୍କଠାରେ ଚିତ୍ତର ଯୋଜନକୁ ଯୋଗ କହି ଓ ଯାହାଙ୍କର ଏ ଯୋଗ ସିଦ୍ଧ ହୁଏ ତାଙ୍କୁ ସିଦ୍ଧପୁରୁଷ ବୋଲି।

ଜେମା — ତେବେ କିପରି ସାଧୁ ଆଜ୍ଞାରେ ରୋଗିର ରୋଗ ଭଲ ହୁଏ, ଅପୁତ୍ରୀ ପୁତ୍ରଲାଭ କରେ, ମାମଲା ମକଦ୍ଦମା ଡିଗ୍ରୀ ହୁଏ ? ଏହା ବୁଝାଇ ଦେଲେ ମୋ ମନ ମାନିବ ।

ବାବାଜୀ — ସ୍ଥାନବାୟୁ ପରିବର୍ତ୍ତନ, ମନର ଦମ୍ପିତା ଇତ୍ୟାଦି ଅନେକ କାରଣରେ ରୋଗ କ୍ଷମା ହୁଏ ଓ ମଧ କୌ କୌ ସ୍ଥଳେ ରୋଗ ଆପଣା ସୁଖେ ଭଲ ହୋଇଯାଏ । କେତେକ ଔଷଧ ପଶ୍ଚାତ୍ ଗୁଣ କରେ ଓ କେହି କେହି ବାବାଜୀ ଆଜ୍ଞାସହିତ ତୁଟକା ଔଷଧ ମଧ ଦିଅନ୍ତି । ବାସ୍ତବରେ ଏହି ହେତୁମାନଙ୍କରେ କେହି କେହି ରୋଗୀ ଭଲ ହେଲେ ଆଜ୍ଞାର ନାମ ହୁଏ କିନ୍ତୁ ଅନେକ ସ୍ଥଳେ ଆଜ୍ଞା ସଫଳ ହୁଏ ନାହିଁ । ରୋଗିମାନେ ଆଜ୍ଞା ଉପରେ ନିର୍ଭର କରି ଚିକିତ୍ସା କରନ୍ତି ନାହିଁ । ଏଣୁକରି ରୋଗ ବୃଦ୍ଧି ହୋଇ ସେମାନଙ୍କୁ ଭାରୀ କଷ୍ଟ ଦିଏ ଓ କେହି କେହି ମୃତ୍ୟୁ ପ୍ରାପ୍ତ ହୁଅନ୍ତି । ଏସ୍ଥଳେ ବାବାଜୀମାନେ କହନ୍ତି ଆମଠାରେ ରୋଗିର ଦୃଢ଼ ବିଶ୍ୱାସ ନ ହେବାର ଆଜ୍ଞା ସଫଳ ହେଲା ନାହିଁ । ଯଦି ବିଶ୍ୱାସ ମୂଳ ହେଲା ତେବେ ଆଜ୍ଞାର ମହିମା କୌଠି ରହିଲା । କେତେକ କାରଣରୁ ସନ୍ତାନ ଉତ୍ପତ୍ତି କିଛି କାଳ ସ୍ଥଗିତ ହୋଇ ଯାଏ ଓ ସେ କାରଣମାନ ବିଦୂରିତ ହେଲେ ସନ୍ତାନ ଜନ୍ମେ; ଏଥକୁ "ତାଳ ପଡ଼ିବା ସମୟେ କାଉ ଖୁମିଲା" ପ୍ରାୟ ଦୁଇ ଏକ ସ୍ଥଳେ ବାବାଜୀର ଆଜ୍ଞା ଘଟି ଯାଏ । ମକଦ୍ଦମା ଅବସ୍ଥା ଦୃଷ୍ଟିରେ ସେମାନେ ଜୟ ଅଥବା ଅଜୟର ଆଜ୍ଞା ଦିଅନ୍ତି କୌଟା ବା ଘଟେ, କୌଟା ବା ନ ଘଟେ । ଦୈବୀ କାହାରି ଦୁଇ ଚାରି କଥା ଘଟିଲେ ଲୋକେ ତାହାଠାରୁ ଦଉଡ଼ନ୍ତି ଓ ସେ ଆଚ୍ଛା ପଣେ ଉପାର୍ଜନ କରେ । ପଛକୁ ତାହାର ଅନେକ କଥା ନ ଘଟିଲେ ଆଉ ତାହାର ତାଦୃଶ ମାନ୍ୟ ହୁଏ ନା । ଏଠାରେ ଜଣେ ଧୋବା ଦି୧୫ନ କରଣୀ ବାହାର କରି କେତେ ଉପାର୍ଜନ କଲା କେତେ ଲୋକର ଜାତି ମାଇଲା ଏହାତ ତୁମେ ଜାଣିଥିବ । ଏହିପରି ସବୁ ବାବାଜୀର ମହିମା । ଆଚ୍ଛା ଏତିକି ବିଷୟରେ ମହିମା ହୁଏ ଆଉ କୌଥିରେ ହୁଏ ନାହିଁ କାହିଁକି ? କାଠଖଣ୍ଡେକୁ କେବଳ ଆଜ୍ଞାରେ କେହି ସୁନା କରି ଦେଇ ପାରେ ?

ଜେମୀ — ନା, ପାରେ ନା। ବୁଝିଲ ମହାରାଜ! ଆମେ ଅବୋଧଲୋକଙ୍କୁ ଠକ ସାଧୁମାନେ ବଡ଼ ଠକୁଚନ୍ତି।

ବାବାଜୀ — ଧର୍ମରୁ ମଙ୍ଗଳ, ପାପରୁ ପରମାଦ, ଧର୍ମରେ ରୁହ ସବୁ ମଙ୍ଗଳ ହବ।

ଜେମୀ — ସତ ମହାରାଜ, ଠିକ କଥା।

(ତୋଟାର ଅନ୍ୟପାର୍ଶ୍ୱରେ ଶିବମିତ୍ର ଓ ଜେମସ୍ ଦଳେଇଙ୍କର ପ୍ରବେଶ)

ଜେମସ୍ — ଭାଇ! ବାବାଜୀଙ୍କର ନିରୋଳା ସାକ୍ଷାତ୍ ସକାଶେ ରାତ୍ର କରି ଆସିଲୁଁ କିନ୍ତୁ ନିରୋଳା ତ ନୁହେ ଦୁଇ ତିନି ଜଣ ଅଛନ୍ତି ପରା, ଭୁଟିଭାଟି ଶୁଭୁଚି, ହେଇ ଦିଶୁ ନାହିଁ କି?

ଶିବ — (ଅନାଇ) ସତେତ, ଦୁଇଜଣ ସ୍ତ୍ରୀଲୋକ, ବାଃ।

ବାବାଜୀ — ହେ ଆମେ ବାବାଜୀ ହେଲେ ହୁଅଚା। (ମତସ୍ୱରେ)

ଶିବ — ଦୁତ୍! ତତେ ନିଶା ହେଇଚି କି? ହଁ ହଁ ହେଇଚି ତ। ଆଛା, ବାବାଜୀଙ୍କଠାକୁ ଅଭିକା ଯିବା କିପରି। ଯଦି ସେମାନଙ୍କ ଯୋଗେ ଆମ ଆସିବାର ପ୍ରକାଶ ହୁଏ ଓ ଯଦୁ ଦିନୁ ହରିକା ଶୁଣଚି ତେବେ ସେମାନେ ହସିବେ ଓ କେତେ ଟାହୁଳି କରିବେ।

ଜେମସ୍ — ସେମାନଙ୍କ ହସ ଟାହୁଳିକୁ କିଏ ପଚାରେ। ଆମର ପାଦରି ସାହେବର କାନରେ ପଡ଼ିଲେ ତ ସେ କେତେ ବକିବ ହୁଏତ ମତେ ପୁଣି excommunicate (ସମାଜଚ୍ୟୁତ) କରିବ।

ଶିବ — ଆଚ୍ଛା ଚାଲ୍ ନଦୀକୂଳକୁ ଯିବା, ସେମାନେ ଗଲାରୁ ଆସିବା, ଥଣ୍ଡାରେ ତୋର ନିଶା ମଧ ଭଣା ହେଇଯିବ। ଭଲା ଟିକିଏ ବରାଣ୍ଡିରେ ତୋତେ ଏତେ ନିଶା ହେଲା କିପରି? ତୁ ତ କିଛି ନୋହୁ। ଦେଖ୍, ମୁଁ ତୋର ଦ୍ୱିଗୁଣ ବରାଣ୍ଡି ଖାଇଚି ତହିଁ ପୂର୍ବରୁ ଚାରିଗୋଲି ମଦଦ୍ ଟାଣି ଥିଲି। କାହାରି ସାଧ ଯେ ମତେ ନିଶା ହେଇଚି ବୋଲି ଠଉରେଇବ।

ଜେମସ୍ — ଛି ଛି! ତୁ ମଦଦ୍ ଖାଉ କେଉଁ ଖାଉଚୁମ?

ଶିବ — ଦୁର୍! ତୁ ସେଥିର କଥା କଣ ଜାଣୁ। "ଯେ ନା ଖାୟ ମଦଦ୍‌ଗୁଲି। ତାକେ କି ମାନୁଷ ବଲି"। ଯେବେ ଦିନେ ଖାଇ ମଜା ବୁଝୁନ୍ତୁ, ତେବେ "ଛି ଛି", କହନ୍ତୁ କି କଣ କରନ୍ତୁ ଦେଖନ୍ତେଇ।

ଜେମସ୍ — ଆଃ ଥୁଃ ! ମୁଁ କୁଆଡ଼େ ମଦଦ୍ ଖାଇବି ! ମଦତର ଯୋଉ ମଏଲା କାରବାର ତାହା ଦିନେ ଦେଖି ମତେ ବାଛି ମାଡ଼ିଲା । ତୁ ଏତେ ରଙ୍ଗରେଜୀ ପଢ଼ି ସଭ୍ୟ ହେଉ, ତୋର ଏପରି ମଏଲା କାରାବାର । ଛି ଛି, ଭାଇ ତୁ ଯୋଉ ମଜା ପାଇ ଖାଉଚୁ କିଛି ଦିନେ ସେଥିରୁ ଏକବେଳକେ ରହିତ ହେବୁ । ପୁରୁଣା ମଦତିଙ୍କର ଅବସ୍ଥା ଦେଖୁଁ ନାହୁଁ, କେତେ ମଲେଣି, କେତେ ମର୍କଟ ରୂପ ଧଇଲେଣି, କେତେ ଚୋର ହେଲେଣି । ଦେଖି ଶୁଣି ଅନ୍ଧ, ସବୁ ନିଶାଠୁଁ ତାହା ଅଧିକ ମନ୍ଦ, ଭାଇ ତା ଛାଡ଼ିଦେ, ଚେଷ୍ଟା କଲେ ଛାଡ଼ି ଯିବ ।

ଶିବ — ମଦତର ସବୁ ଦୋଷ, drinkingର (ସୁରାପାନର) କିଛି ଦୋଷ ନାହିଁ । ଚାଲ୍ ବନ୍ଧ ଉପରକୁ ଚାଲ୍, ତେଣେ ଜଣେ ଅନେଇଲାଣି ।

ପ୍ରସ୍ଥାନ

ରାଧୀ — (ଜେମୀ ପ୍ରତି) ଆଲୋ ନାନି ! ତୋଟା ସେ ମୁଣ୍ଡରେ ଯୋଡ଼ାଏ ଧଳା ଧଳା କଣ ଦୁଶିଗଲାମ; (କାତର୍ ସ୍ୱରେ) ଇଲୋ କଣ ଲୋ ?

ଜେମୀ — (ଅନାଇ) କାହିଁ କିଛିତ ନାହିଁ ।

ରାଧୀ — ଇଲୋ ତେବେ ଭୂ- (ଅଚେତନ ହୋଇ ପଡ଼ିଲା)

ଜେମୀ — ମୋ ମାଆ ! ଇଏ କଣ ହେଲା ! ରାଧି ଲୋ ଏମନ୍ତେ କାହିଁକି ଲୋ, ରାଧି ! କିଛି ଡର ନାହିଁ (ରାଧୀକୁ କୋଳରେ ଧରି) ରାଧି ରାଧି ! (କାତର ସ୍ୱରେ) ମ ମ, ଶୁଣିବାକୁତ ନାହିଁ, ଅନେଇବାକୁ ତ ନାହିଁ କଣ ହେଲା ! ମୋ ସମରିତ ସଇଲା (କ୍ରନ୍ଦନ) ମୁଁ ପୋଡ଼ାମୁହାଁ ଯାକୁ କାହିଁକି ରାତିରେ ଏଠିକି ଆଣିଲି ଲୋ, ରାଧାରାଣୀ ତ ଭୂ କରି ରହିଗଲେ ଲୋ, ମୋ ମା ରାଣି ଲୋ, କଣ କରିବି ମତେତ କିଛି ବୁଦ୍ଧି ଦିଶୁ ନାହିଁ ଲୋ, ମେ ମାଆରାଣି ଲୋ !

ବାବାଜୀ — ଏଡ଼େ ଅସ୍ଥିର କାହିଁକି ? ଥିଏ ହୋ !

ଜେମୀ — (କାନ୍ଦି କାନ୍ଦି) କଣ ଥିଏ ହେବି ମହାରାଜ ! ମତେତ ଚାରିଆଡ଼ ଅନ୍ଧାର ଦୁଶିଗଲାଣି, ମହାରାଜ ! ଏଟା ଡାଆଣୀ-ଭୂତର ଜାଗା,

ମୋ ରାଧୀତ ଅତି ସୁନ୍ଦରୀ ସୁକୁମାରୀ, ତାକୁ କାହାରି ଦୃଷ୍ଟି ହେଲା କି ଭୂତ ମାଡ଼ି ବସିଚି କି କିଛି ଭେଟଣା ହେଲା, ମୁଁ ତ କିଛି ଠିକଣା କରି ପାରୁ ନାହିଁ। ତାକୁ ଘରକୁ ନେବି କେମନ୍ତେ ମତେ ବୁଦ୍ଧି ଦୁଶୁ ନାହିଁ। ମହାରାଜ! ତୁମ ଗୋଡ଼ତଳେ ପଡୁଚି ତୁମେ ମତେ ସାହା ହୁଅ।

ବାବାଜୀ ତୁ ଅଧୈର୍ଯ୍ୟ ହୋ ନା, ଭୂତ ଡାଆଣୀ ଭେଟଣା ସବୁ ମିଛ, ସେ କେବଳ ଭୟରେ ଅଚେତନ ହୋଇଚି, ଏହି କ୍ଷଣି ଚେତନା ପାଇବ, ତୁ ତା କାନ ଫୁଙ୍କିଲୁ।

ଢେମୀ (କାନ ଫୁଙ୍କି ଫୁଙ୍କି) କାହିଁ ମହାରାଜ! କିଛିତ ହେଲା ନାହିଁ, ତୁମେ କଣ କହୁଚ ଭୂତପ୍ରେତ ମିଛ, ତାହାର ଚ ଡଙ୍କ ମୋଡ଼ି ଦେଲାଣି, ମୁଁ କଣ କରିବି (କ୍ରନ୍ଦନ)

ବାବାଜୀ ଆଛା ତୁ ସ୍ଥିର ହୋଇ ତାକୁ ଟିକିଏ କୋଳରେ ବସେଇଲୁ, ଆମେ ଏହିକ୍ଷଣି ଭଲ କରିଦେବୁଁ। (ଢେମୀ ରାଧିକୁ କୋଳରେ ବସାଇଲାରୁ ବାବାଜୀ ତାହା ମୁହଁରେ ପାଣି ମାରି କିଞ୍ଚିତ ପାଣି ପିଆଇଦେଲେ ଓ ଫୁଲ ଡାଲାରେ ପବନ କଲେ ମୁହୂର୍ତ୍ତେ ଉତ୍ତାରେ ରାଧୀ ଚେତନା ପାଇଲା)

ବାବାଜୀ ରାଧି! ମଁନୁଷ୍ୟ ଦେଖି ଏପରି ଡରିଲୁ। ଆମେ ଦେଖିଚୁଁ ଦୁଇଜଣ ମନୁଷ୍ୟ ତୋଟାର ସେ ମୁଣ୍ଡରେ ମୁହୂର୍ତ୍ତେ ଠିଆ ହୋଇ ଚାଲି ଗଲେ ତୋର ଏଢ଼େ ଭୟ ହେଲା କାହିଁକି?

ରାଧୀ ମହାରାଜ! ଏ ଭୂତ ଡାଆଣୀର ଜାଗା, ମୁଁ ଭୂତ ମନରେ କରି ଚମକି ପଡ଼ିଲି।

ବାବାଜୀ (ଢେମୀ ପ୍ରତି) ଦେଖି ଆମେ କଣ କହୁଥିଲୁଁ। ବାସ୍ତବରେ ଭୂତ ଡାଆଣୀ ଇତ୍ୟାଦି କିଛି ନାହିଁ। କୁସଂସ୍କାର ହେତୁ ସେପରି ଭ୍ରମଯୁକ୍ତ ବିଶ୍ୱାସ ଥିବାରୁ ଭୟ ହୁଏ, ସେହି ଭୟଟି ଭୂତ "ନିଜଗାଁ ମଶାଣି, ପରଗାଁ ନଈକୂ ଭୟ ହୁଏ" ପରଗାଁ ମଶାଣିରେ ଶୋଇ ରହିଲେ ମଧ ଭୂତ ଲାଗେ ନା। କାରଣ ତାହା ଜଣା ନ ଥିବାରୁ ଭୟ ହୁଏ ନା।

ଢେମୀ ହଉ, ରାଧୀର ସିନା ଭୟରେ ଏପରି ହେଲା, ଆଉ ଯେ ଭୂତର କାଣ୍ଡ ମୁଁ ଦେଖିଚି ତାହାର ଭୟ ନୁହେ। ଏଠାରେ

ହନୁସିଂହର ଭାରିଯାକୁ ଭୂତ କି ବାଉତୀ ଲାଗିଲା ଯେ ସେ ଆଠଦିନଯାଏ ଏତେ ଧୂମଧାମ କଲା ମୁଁ ତା କଣ କହିବି ! ବଳୀ ମାହାନ୍ତି ଘରକୁ ଭୂତ ରାତି ଦିନ୍ ଟେକା ପଥର ହାଡ଼ ଫୋପାଡ଼ିଲା, ଏଠିର ଚିଜ ସେଠି ରଖିଦେଲା ପୁଣ ତାହାର ଭେଣ୍ଡା ପୁଅକୁ ରାତିରେ ଦିନରୁ ଉଠେଇ ଦୁଇ ପା ବାଟ ନେଇ ଯାଇ ଗୋଟାଏ ଗାଡ଼ିଆରେ ମାଡ଼ିଦେଲା । ସେହି ପୂଝାରୀ ମନ୍ତ୍ର ଯନ୍ତ୍ର କରି ସେମାନଙ୍କୁ ରକ୍ଷା କଲା । ଆଉ ସଦା ମା ପିଶାଚୁଣୀ ଜଣକୁ ଲାଗିଲା ଯେ ତାକୁ କେହି ଛଡ଼େଇ ପାରିଲେ ନାହିଁ, ତାହାର ପ୍ରାଣ ନେଲା, ଯେବେ ଭୂତ ଡାଆଣୀ ମିଛ ତେବେ ଏ ସବୁ ହେଲା କିପରି ?

ବାବାଜୀ　　ହନୁସିଂହର ଭାରିଯା ମନ୍ଦ କାମନାରେ ଛଟା କରିଥିବ । ବଳୀ ଘରକୁ କେହି ଦୁଷ୍ଟଲୋକ ଟେକା ଇତ୍ୟାଦି ଲୁଚି କରି ଫୋପାଡ଼ି ଥିବ । ବାତ ପିତ୍ତ ବା ସନ୍ନିପାତ ରୋଗରେ ରୋଗୀ ବଳେ ବିଛଣାରୁ ଉଠି ପଳାଏ, ମତି ଭ୍ରମ ଓ ଶରୀରର ନାନାଦି ବିଭଙ୍ଗ ହୁଏ । ଯେଉଁ ଜଣକ ମରିଗଲା ତାକୁ ଏହିପ୍ରକାର କିଛି ଉତ୍କଟ ରୋଗ ଘଟିଥିବ, ତାହା କେହି ଚିହ୍ନି ନ ପାରି ଭୂତଲଗା ବୁଝିଲେ ଭୂତର ନାମ ପଚାରିବାରେ ସେ ଗୋଟିଏ ପ୍ରଚଳିତ ନାମ କହିଥିବ । ଆମେ ଦେଖିଚୁଁ ଜଣେ ପୋଖତୀକୁ ଦିନେ ସାମାନ୍ୟ ଜ୍ୱର ହୋଇ ହଠାତ୍ ସନ୍ନିପାତ ହେବାରୁ ସେ ବକିଲା ଓ ଚକ୍ଷୁ କିଛି ଲାଲ ଦିଶିଲା । ଲୋକେ ତାକୁ ଭୂତ ଲାଗିବାର ବୁଝି ମନ୍ତ୍ରଦ୍ୱାରା ଭୂତ ଛଡ଼େଇବାରେ ରହିଲେ । ଶେଷକୁ ସନ୍ନିପାତ ବୋଲି ଚିହ୍ନିଲେ କିନ୍ତୁ ସେତେବେଳକୁ କିଛି ଉପାୟ ନ ଥିଲା ତାହାର କାଳ ହେଲା । ଆଉ ଭୟରେ ମଧ୍ୟ ପ୍ରାଣ ବାହାରି ଯାଏ, ଲୋକେ ବୁଝି ନ ପାରି ଦେବାଦେବୀର ଭେଟଣା କହନ୍ତି । ଭୟହିଁ ଭୂତ, ଭୟହିଁ ଭେଟଣା, ଭୟ ନ ହେଲେ କିଛି ନାହିଁ । କୁସଂସ୍କାର, ଅଜ୍ଞାନତା ଓ ଅଧର୍ମ ଭୟର ମୂଳ ଅଟେ ।

ଭେମୀ　　ଆଚ୍ଛା ଚିରିକୁଣୀ ନିଅାଁ ଜାଳେ କିପରି ? ଏଥିରେତ ଭୟ ଭ୍ରାନ୍ତି ନାହିଁ ।

ବାବାଜୀ — ହଁ, ଭ୍ରାନ୍ତି ଅଛି। ତାହା ଚିରୁକୁଣୀ ନୁହେ ତହିଁର ତତ୍ତ୍ୱ ଶୁଣ। ପଙ୍କୁଆ ସ୍ଥାନରୁ ଅଥବା ପଚାଦ୍ରବ୍ୟରୁ କିମ୍ବା ପୋଡ଼ା ହାଡ଼ରୁ ଏକ ପ୍ରକାର ବାମ୍ପ ବାହାରେ ଯେ ତାହା ଆପଣାଛାଏଁ ଜଳିଉଠେ, ପବନଯୋଗେ ଗମନ କରେ ଓ କେତେବେଳେ ଲିଭିଯାଏ ଓ ପୁଣି ଜଳିଉଠେ। ଏହାକୁ "ଗାସ୍" ଅର୍ଥାତ୍ ବାଷ୍ପଆଲୁଅ କହନ୍ତି। ଶ୍ମଶାନରେ ଅନେକ ଶବ ପଡ଼ି ସଢ଼ୁ ଥିବାରୁ ଓ ପୋଡ଼ା ହାଡ଼ ଥିବାରୁ ସେଠାରେ ଓ ପାଟ ବିଲରେ ଏ ବାଷ୍ପ ଆଲୁଅ ଅଧିକ ଦେଖାଯାଏ। ଏକପ୍ରକାର ବିଲୁଆ ଅଛନ୍ତି ସେମାନଙ୍କ ମୁହଁରୁ ମଧ୍ୟ ଶୂନ୍ୟ ଆଲୁଅ ବାହାରେ। ଏହାକୁ ଉଲ୍କାମୁଖୀ କହନ୍ତି। କଲିକତା ସହର ମଧ୍ୟରେ କଳ ଯୋଗେ ଏପରି ଗାସ୍ ଆଲୁଅର ରୋଷନୀ ପ୍ରତିଦିନ ହୁଅଇ। ଚିରିକୁଣୀ ନିଆଁ ଜାଳି ପିଲା ସେକିବା କଥା ମିଥ୍ୟା— ଗଳ୍ପ ଅଟେ। ଲୋକେ ଅଜ୍ଞାନତା ହେତୁ ଜଗତ୍ ପ୍ରକୃତିର ଚମତ୍କାର ଘଟନାମାନଙ୍କର ତତ୍ତ୍ୱ ବୁଝି ନ ପାରି ନାନାବିଧ କାଳ୍ପନିକ କଥା ସିଦ୍ଧାନ୍ତ କରନ୍ତି। ଏ ସବୁ ବୁଝିବାକୁ ବିଦ୍ୟା ବୁଦ୍ଧି ଜ୍ଞାନ ଆବଶ୍ୟକ।

ଜେମୀ — ମହାରାଜ! ଆଜି ଆପଣଙ୍କଠାରୁ ଅନେକ ଜ୍ଞାନ ପାଇଲୁଁ।

ରାଧୀ — ସତେ ମ! ଏଡ଼େକଥା କିଏ ବୁଝେଟା।

ବାବାଜୀ — ଆଚ୍ଛା ତେବେ ବର୍ତ୍ତମାନ ଆସ ରାତ୍ର ହେଲାଣି। କାଳେ ତୁମେମାନେ ଡରିବ ଆମେ ତୁମକୁ କିଛିଦୂର ବଳେଇଦେଇ ଆସିବା।

ରାଧୀ — ଆଉ ଡର କେଁ କଥାକୁ, ଆମେ ଚାଲିଯିବା, ଆପଣ କାହିଁକି କଷ୍ଟ ସହିବେ।

ବାବାଜୀ — ନା, ଆମର କିଛି କଷ୍ଟ ହବ ନାହିଁ, ତୁମର ହଠାତ୍ ଏତାଦୃଶ ଦମ୍ଭିତା ହୋଇ ନ ପାରେ। ଯଦ୍ୟପି ଆମର ଉପଦେଶକୁ ସର୍ବଦା ଭାଳିବ ଓ ଆଲୋଚନା କରିବ ତେବେ ତୁମର ମନ ଦୃଢ଼ରୂପେ ମାନିବ ଓ ଦମ୍ଭିତା ହେବ। ବର୍ତ୍ତମାନ ଚାଲ ଆମେ ଛାଡ଼ି ଦେଇ ଆସୁଁ।

ସମସ୍ତଙ୍କ . ପ୍ରସ୍ଥାନ।

(ଶିବ ମିତ୍ର ଓ ଜେମସ୍ ଦଳେଇର ପ୍ରବେଶ)

ଜେମସ୍ — କାହିଁ ବାବାଜୀତ ନାହାନ୍ତି। ସେ ସ୍ତ୍ରୀମାନଙ୍କ ସାଙ୍ଗରେ ଗଲେ କି ? ହେଲା ! ବାବାଜୀଙ୍କ କଥା ଜଣା ପଡ଼ିଲା। ଭଣ୍ଡ ବାବାଜୀଟାଏ, ତୁମ୍ଭାକୁ ଏତେ ବାଟ ମାପିଲୁଁ।

ଶିବ — ନା, ନା, ସେ ସେ ପ୍ରକାର ଭଣ୍ଡ ବାବାଜୀ ନୁହନ୍ତି। ତାଙ୍କ କଥା ଅତି ଚମତ୍କାର ତାଙ୍କୁ ଉପହାସ ବା ନିନ୍ଦା କର ନା। କେହି କେହି ସାଧୁଙ୍କର ଏପରି ଶକ୍ତି ଥାଏ ଯେ ସହସ୍ର କୋଶ ଅନ୍ତରରେ ତାଙ୍କର ପ୍ରସଙ୍ଗ ପଡ଼ିଲେ ସେ ସେହିକ୍ଷଣି ଜାଣିପାରନ୍ତି। ଏ ବାବାଜୀ ସେପରି ଶକ୍ତିଦ୍ୱାରା ତୋର ଉପହାସ ଜାଣିପାରିଲେ ବଡ଼ ବିଷମ ହବ।

ଜେମସ୍ — ତେବେ ସେ କୁଆଡ଼କୁ ଗଲେ, ଏତେ ବାଟ ଆସି କଣ ବାହୁଡ଼ି ଯିବା !

ଶିବ — ନା, ଯିବା ନାହିଁ ଦଣ୍ଡେ ଅପେକ୍ଷା କରିବା, ବୋଧହୁଏ ସେ ବାହାରକୁ ଯାଇଥିବେ ଏହିକ୍ଷଣି ଆସିବେ। ଏସ୍ଥାନର ଶୋଭା ଦେଖ; ଆହା ! କେମନ୍ତ ମନୋରମ୍ୟ ହେଉଚି ! ଚନ୍ଦ୍ର କିରଣରେ କେଡ଼େ ସୁନ୍ଦର ଦିଶୁଚି ! ବାବାଜୀ ଆଚ୍ଛା ସ୍ଥାନଟିଏ ମନୋନୀତ କରିଚନ୍ତି। ସେ ଯାଉନ୍ତୁ ଆମର ଦିନେ ଏଠାରେ ମଉଜ କରିବା, ସବୁ friendsକୁ (ସଙ୍ଗିମାନଙ୍କୁ) ଓ ରାଧୀକୁ ଆଣିବା, ସେ ଏବେ ବେଶ ଗାଉଚି, କେମନ୍ତ ମଜା ହବ ?

ଜେମସ୍ — ଯୋଉ ମଜା ହବ ଭାଇ ତା କାହିଁକି କହୁଚୁ। ମଉଜକୁତ ସ୍ଥାନ ଇଏ। ରାଧୀ ଜେମୀ ଦୁହିଁକୁ ଆଣିବା ଜଣକେ କିଛି ଜମିବ ନାହିଁ, ନା ମଜା ହବ ନାହିଁ। country ଓ exshaw (ଦେଶୀ ସୁରା ଓ ବ୍ରାଣ୍ଡି) ଏ ଦୁଇ ରକମ ଆଣିବାକୁ ହବ। ଏସବୁ ନ ହେଲେ କିଛି ମଜା ହବ ନାହିଁ।

ଶିବ — ତା ନ ହେଲେ ଆଉ କଣ ହବ। Wine and women are the two things in the world, Ah!-(ସୁରା ଓ ସ୍ତ୍ରୀ ତ ସଂସାରରେ ସାର)। ଆରେ ! ଆଜି ଜେମୀ ରାଧୀର ଗାଉଣା ହବାର ଥିଲା, ଏଠାକୁ ଆସିବାର ହବାରୁ ମନା କରି ପଠେଇଲି।

ଜେମସ୍ ଆଜି ନ ହେଲା ନାହିଁ ସେ ଦିନ ମନ ଇଚ୍ଛା ସବୁ ହବ। ହେଉ, ବାବାଜୀ ଆସୁଚନ୍ତି।

ବାବାଜୀଙ୍କର ପ୍ରବେଶ

(ଶିବ ଆଠଣୀ ଓ ଜେମସ୍ ଦିଅଣା ପ୍ରଣାମୀ ଦେଇ ପ୍ରଣାମ କଲାରୁ)

ବାବଜୀ ମଙ୍ଗଳ ହଉ ବାବା, କୁଆଡ଼େ ଆସିବା ହେଲେ ?

ଶିବ ଆପଣଙ୍କର ଚରଣ ସେବାକୁ ଆସିଲୁଁ।

ବାବାଜୀ ଆପଣଙ୍କର ନିବାସ ?

ଶିବ ବଙ୍ଗଦେଶ ଆମର ମାତୃଭୂମି, କିନ୍ତୁ ଆମ ପିତାଙ୍କର ଏଠାରେ ଚାକରୀ ହବାରୁ ସେହି ସମୟରୁ ଏ ଦେଶରେ ରହିଅଛୁଁ। ଆମର ମଧ ଚାକରୀ ଅଛି।

ବାବାଜୀ ଏ ବାବୁ କଣ ଏହିପରି ଚାକରୀ ଛଳରେ ଏଠାରେ ରହିଚନ୍ତି ?

ଶିବ ଆଜ୍ଞା, ନା, ସେ ଏଦେଶୀୟ ଓଡ଼ିଆ, ତାଙ୍କର ଚାକରୀ ଥିଲା, ବର୍ତ୍ତମାନ ନାହିଁ।

ବାବାଜୀ କେମନ୍ତ। ସେ ଓଡ଼ିଆ, ଠିକ୍ ବଙ୍ଗାଳୀ ପରି ଦୃଶ୍ୟୁଚନ୍ତି। ବର୍ଣ୍ଣରେ କଣ ?

ଶିବ ସେ କିରସ୍ତାନ।

ବାବାଜୀ ଆପଣ ହିନ୍ଦୁ ପରା ?

ଶିବ ଆଜ୍ଞା।

ଜେମସ୍ ନାହିଁ ମହାରାଜ, ସେ ହିନ୍ଦୁ ନୁହେ ନା ମୁସଲମାନ ନୁହେ, କିରସ୍ତାନ ନୁହେ ନା ବ୍ରହ୍ମଜ୍ଞାନୀ ନୁହେ। ତାହାଂର କିଛି ଠିକ୍ ନାହିଁ।

ଶିବ ନାହିଁ ମହାରାଜ, ମୁଁ ହିନ୍ଦୁ, ସେ କଣ ଜାଣେ, ଆପଣମାନେ କିରସ୍ତାନଙ୍କ ପ୍ରତି ବିରକ୍ତ ଥାଚି, ସେ କିରସ୍ତାନ ବୋଲି ମୁଁ କହିବାରୁ ସେ ମୋ ଉପରେ ଚିଡ଼ି ଏପରି କହୁଚି।

ବାବାଜୀ ନାହିଁ କିରସ୍ତାନଙ୍କ ପ୍ରତି କାହିଁକି ବିରକ୍ତ ହବା, ସେମାନଙ୍କ ମଧ୍ୟରେ ସୁଦ୍ଧା ଜ୍ଞାନୀ ଓ ଧର୍ମଶୀଳ ବ୍ୟକ୍ତିଥାଚି।

ଜେମସ୍ ହଁ ମହାରାଜ, ମୁଁ କିରସ୍ତାନ ହେଲେ କଣ ହେଲା ମୁଁ ସବୁ ମାନେ, ମୁଁ ସେପରି ହୁଡ୍ କିରସ୍ତାନ ନୁହେ। (ଯୋଡ଼ହସ୍ତ ହୋଇ) ମହାରାଜ। ଆମେ କିଛି କାମନାରେ ଆସିଚୁଁ।

ବାବାଜୀ　　ଦୁଇ ଏକ ଦଣ୍ଡ ପୂର୍ବେ ଆପଣମାନେ ତୋଟାର ସେପାଖକୁ ଆସିଥିଲେ କି ?

ଜେମସ୍　　ଆଜ୍ଞା ଆପଣଙ୍କ ଦର୍ଶନକୁ ଆସୁଥିଲୁଁ, ପୁଣି ଟିକିଏ ନଦୀ ଦେଖିବାକୁ ଚାଲିଗଲୁଁ।

ବାବାଜୀ　　ଆମଦ୍ୱାରା ତୁମର କି କାମନା ସିଦ୍ଧ ହୋଇପାରେ।

ଜେମସ୍　　ଆପଣଙ୍କ ମହିମାରେ ସବୁ ହୋଇପାରେ।

ବାବାଜୀ　　ଆମେ ତ ମନୁଷ୍ୟମାତ୍ର, ଆମର କ ମହିମା !

ଶିବ　　ମହାରାଜ ! ତା କହିଲେ କି ଆମେ ମାନିବୁଁ। ସିଦ୍ଧପୁରୁଷ ସାଧୁଙ୍କର ମହିମା ହୁଏ, ଏହା ଅନେକ ଶୁଣାଅଛି ଓ ଦେଖାଅଛି।

ବାବାଜୀ　　କଣ ଦେଖିଚ କହିଲ ?

ଶିବ　　ବର୍ଷେ ହବ, ଜଣେ ପରମହଂସ ଆମ ଘରଠାରେ ପ୍ରବେଶ ହେଲେ, ତାଙ୍କର ଭୋଜନର ଆୟୋଜନ ହେଲାରୁ ସେ ଆସନରେ ବସି ଆପଣା ତାଳୁ ଉପରେ ହାତ ମାରିଦିଅନ୍ତେ ମୂର୍ତ୍ତିଏ ଶାଳଗ୍ରାମ ତାଙ୍କ ପାଟି ଭିତରୁ ବାହାରି ପଡ଼ିଲେ। ସେ ଶାଳଗ୍ରାମଙ୍କୁ ପୂଜା କରି ଭୋଗ ଦେଇ ମୁଖ ମଧ୍ୟରେ ରଖି ଦିଅନ୍ତେ ଶାଳଗ୍ରାମ ତାଙ୍କର ମସ୍ତିଷ ଅର୍ଥାତ୍ ମଗଜ ମଧ୍ୟକୁ ଚାଲି ଗଲେ। ସେ ପ୍ରତିଦିନ ଏହପରି କରନ୍ତି। ମୋର ଦାଦା (ଭାଇ) ପ୍ରାୟ ନାସ୍ତିକ, ବାବାଜୀଙ୍କ ଉପରେ ବଡ଼ ଚିଡ଼ନ୍ତି କିନ୍ତୁ ପରମହଂସଙ୍କର ଏପରି ମହିମା ଦେଖି ତାଙ୍କୁ ଅତି ସମ୍ମାନ କଲେ ଓ ବସ୍ତ୍ର ଇତ୍ୟାଦି ବିଦାଜୀ ଦେଲେ। ମନୁଷ୍ୟର ମହିମା ନ ହୁଏ କିପରି।

ବାବାଜୀ　　ଆମେ ସେପରି ସିଦ୍ଧପୁରୁଷ ନୋହୁଁ। ଆମେତ ଭଣ୍ଡ ବାବାଜୀ, ଆମର କି ମହିମା ?

ଶିବ　　ଏଡ଼େ ମୂର୍ଖ କିଏ ଅଛି ଯେ ସେ କହିବ ଆପଣ ଭଣ୍ଡ ବାବାଜୀ, ଆପଣଙ୍କର କିଛି ମହିମା ନାହିଁ।

ବାବାଜୀ　　ତୁମେମାନେ କହିଚ କିମ୍ବା ତୁମ ମନରେ ଏପରି କିଛି ବୈଗୁଣ୍ୟ ଜନ୍ମିଚି।

ଶିବ　　ଆମ ମନରେ ଏପରି ବୈଗୁଣ୍ୟ ଥିଲେ କି ରାତ୍ରକାଳରେ ଏତେ ବାଟ ଆସିଥାନ୍ତୁ।

ବାବାଜୀ　　ଏଠାକୁ ଆସିବା ଉତ୍ତାରେ ବୈଗୁଣ୍ୟ ଜାତହେଲା ଆମକୁ ତାହା ଗୋଚର ହେଉଚି।

ଶିବ (ଜେମସ୍‌ପ୍ରତି) ଦେଖ୍, ମୁଁ କଣ କହୁଥିଲି, ଏବେ ସମ୍ଭାଳ, ତୁ ଯୌଠି ଥିବୁ ସବୁ ବିଗାଡ଼ିବୁ। (ବାବାଜୀ ପ୍ରତି) ହଁ ମହାରାଜ ଏ ବାବୁ ସେପରି କିଛି କଥା ଏଠିଠାରେ କହିଥିଲେ କିନ୍ତୁ ମୁଁ ତତ୍‌କ୍ଷଣାତ୍ ଟୋକି ଦେଇଚି। ସେ କିରସ୍ତାନ ତାଙ୍କର ସେତେଦୂର ଜ୍ଞାନ କାହିଁ, କିରସ୍ତାନମାନେ ସାଧୁସନ୍ଥଙ୍କ କଥା କଣ ଜାଣନ୍ତି, ତାଙ୍କ କଥା ଧର୍ତ୍ତବ୍ୟ ନୁହେ। ଯାହାହେଉ, ଆମର ଦୋଷ ହେଇଚି, ଦୟା ବହି ଦୋଷ କ୍ଷମା କରନ୍ତୁ।

ଜେମସ୍ (କରଯୋଡ଼ି) ମହାରାଜ! ମୁଁ ବଡ଼ ଅପରାଧ କରିଚି। ଆପଣ ଦୟାଶୀଳ ଓ ଅତି ମହାନ୍ ଏ କ୍ଷୁଦ୍ର ଜୀବର ଦୋଷ କ୍ଷମା ନ କଲେ ଆଉ କିଏ କ୍ଷମା କରିବ। ''ଦଣ୍ଡିବା ଶକ୍ତି ଯାର ଥାଇ। ସେ ପୁଣି କ୍ଷମା ଆଚରଇ''। (ପାଦ ତଳେ ପଡ଼ି) ମୋ ଦୋଷ କ୍ଷମା କରନ୍ତୁ ମହାରାଜ।

ବାବାଜୀ ଉଠ ଉଠ ବାବା, ଆମେ ତୁମ ଦୋଷ କ୍ଷମା କଲୁଁ। ତୁମମାନଙ୍କର କି କାମନା ?

ଶିବ ଆପଣ କଣ ତାହା ଜାଣି ନ ଥିବେ ଯେ ଆମେ କହିବୁଁ କାହିଁକି।

ବାବାଜୀ ହଁ, ତୁମ କାମନା ବିଷୟ ମଧ୍ୟ ଆମକୁ ଗୋଚର ହୋଇଚି, ତୁମର ପିତା ବାତରୋଗରେ ଅତି ପୀଡ଼ିତ ଥିବାରୁ ତାଙ୍କର ଆରୋଗ୍ୟ ସକାଶେ ତୁମର କାମନା, ଏ ବାବୁଙ୍କର ଚାକିରିର କାମନା!

ଜେମସ୍ (ଶିବପ୍ରତି) ଅହୋ! ମହାରାଜଙ୍କର ଏପରି ମହିମା! ମୁଁ ଚଣ୍ଡାଳ କଣ କହୁଥିଲି।

ଶିବ ଆରେ! ଏତ ସାମାନ୍ୟ କଥା, ଆଉ ଯେ ପ୍ରସଙ୍ଗ ଶୁଣିଚେଇଁ ତାହା କେଡ଼େ ଚମତ୍କାର!

ବାବାଜୀ କଣ ଶୁଣିଚ କହିଲ। ସଂକ୍ଷେପରେ କହିବ।

ଶିବ ଆପଣ ମଲା ରନ୍ଧା କୁକୁଡ଼ାକୁ ବଞ୍ଚାଇଦେବା ହେଲେ, ସେ ପୁଣି ଜଣେ ମନୁଷ୍ୟର ପ୍ରାଣ ନେବାକୁ ବସିଲା, ଏହା କି ସାମାନ୍ୟ କଥା ?

ବାବାଜୀ ଆଉ ଆମେ ସହି ପାରିବୁଁ ନାହିଁ। ଏହିକ୍ଷଣି ଦୁଇଜଣ ମୂର୍ଖ ସ୍ତ୍ରୀ ଯେପରି କହୁଥିଲେ, ତୁମେ ବିଦ୍ୟାବନ୍ତ ବ୍ୟକ୍ତି ହୋଇ ସେହିପରି କହୁଚ। ବୁଦ୍ଧି ଓ ଜ୍ଞାନ ପାଇଁ ବିଦ୍ୟାଶିକ୍ଷା, କିନ୍ତୁ ତୁମମାନଙ୍କର ଜ୍ଞାନ ବୁଦ୍ଧି କିଛିହିଁ ଦେଖୁ ନାହୁଁ। "ଯାହା ନ ଦେଖିବ ଦୁଇନୟନେ। ପରତେ ନ ଯିବ ଗୁରୁବଚନେ" ଏପରି ଅସମ୍ଭବ କଥା ଶୁଣିଲାମାତ୍ରକେ ତହିଁରେ ବିଶ୍ୱାସ କଲ, ପୁଣି ତା କହୁଚ, ବଡ଼ ଆଶ୍ଚର୍ଯ୍ୟ! ବୁଝିଲ, ତାହା ସମ୍ପୂର୍ଣ୍ଣ ମିଥ୍ୟା! ମନୁଷ୍ୟର ଅଲୌକିକ ମହିମା କଦାପି ହୋଇ ନ ପାରେ।

ଜେମସ୍ ତେବେ ଆପଣ ଆମ କାମନା କିପରି ଜାଣି ପାରିଲେ। ଆମର ନାମ ସୁଦ୍ଧା ଏପର୍ଯ୍ୟନ୍ତ କହି ନାହୁଁ କିମ୍ବା ଆମ ମନକଥା ଅନ୍ୟ କାହାରିଠାରେ ପ୍ରକାଶ କରି ନାହୁଁ। ଏ ଅବସ୍ଥାରେ ଆପଣ ମହିମା ବା କର୍ଣ୍ଣପିଶାଚ ବିଦ୍ୟାବଳେ ଆମ ମନକଥା ଜାଣିଥିବେ ସନ୍ଦେହ ନାହିଁ।

ବାବାଜୀ କର୍ଣ୍ଣପିଶାଚ ବିଦ୍ୟା ମଧ୍ୟ ସମ୍ପୂର୍ଣ୍ଣ ମିଥ୍ୟା। ଯେ ଦୁଇଜଣ ବେଶ୍ୟା ଆସିଥିଲେ ସେମାନେ କହୁଥିଲେ କି ଜଣେ ବଙ୍ଗାଳିବାବୁ ଆସିବେ ତାଙ୍କର ପିତା ବାତ ରୋଗରେ ଅତି ପୀଡ଼ିତ ଅଛନ୍ତି। ଏ ବାବୁ ତୁମର ପରିଚୟ ଦେଲାବେଳେ କହିଥିଲେ ଯେ ତୁମର ଚାକରି ଥିଲା, ବର୍ତ୍ତମାନ ନାହିଁ। ଏତିକି ସଙ୍କେତରୁ ଆମେ ବୁଦ୍ଧିବଳରେ ତୁମ କାମନା କଥା ଅନୁମାନ କରି କହିଲୁଁ।

ଜେମସ୍ ଆଚ୍ଛା, ମୋ ମନର ବୈଗୁଣ୍ୟ ବିଷୟ କିପରି ଜାଣିଲେ, ତାହା ତ ଦୁଇ କାନରୁ ଅଧିକ ହୋଇ ନାହିଁ କିମ୍ବା ତହିଁରେ କିଛି ସଙ୍କେତ ପାଇ ନାହାନ୍ତି। ଆପଣ ମତେ ଭୁଲେଇଲେ କି ମୁଁ ଭୁଲିବି। ଦୋହି ମହାରାଜ! ଆମ ଉପରେ ଟିକିଏ ପ୍ରସନ୍ନ ହଉନ୍ତୁ।

ବାବାଜୀ ତୁମର ମନର ବୈଗୁଣ୍ୟ କଥା ମଧ୍ୟ ଆମେ ଅନୁମାନ କରି କହିଲୁଁ। ତୁମେ ଯେତେବେଳେ ତୋଟାର ସେ ପାର୍ଶ୍ୱକୁ ଆସିଥିଲ ତେତେବେଳେ ଆମ ନିକଟରେ ସ୍ତ୍ରୀଲୋକ ଅବଶ୍ୟ ଦେଖିଥିବ। ପୁନର୍ବାର ଆସିଲା ବେଳକୁ କାହାରିକୁ ନ ଦେଖିଲ। ଆମର ଆଚରଣ ତୁମକୁ ଜଣା ନାହିଁ ଓ ତୁମର ମନ ଦୁର୍ବଳ ଓ ଅପରିଷ୍କୃତ। ଏ ଅବସ୍ଥାରେ ତୁମ ମନରେ ବୈଗୁଣ୍ୟ ଜନ୍ମିଥିବ,

ଏହା ଭାବି ଆମେ କହିଥିଲୁଁ, ଦୈବୀ ତାହା ଠିକ୍ ଘଟିଲା। ଏହି ପ୍ରକାରରେ ଶଠସାଧୁମାନେ ଲୋକଙ୍କୁ ଭଣ୍ଡନ୍ତି। ଏହା ତୁମକୁ ପ୍ରତ୍ୟକ୍ଷ ଦେଖାଇବା ପାଇଁ ଆମେ ପ୍ରଥମେ କପଟ କରି ଏପରି ଭଙ୍ଗିରେ କହିଥିଲୁଁ। ଏହି ପ୍ରକାର ସବୁ ଜାଣିବା ମହିମା ବା କର୍ଣ୍ଣପିଶାଚ ବିଦ୍ୟା ସମ୍ପୂର୍ଣ୍ଣ ମିଥ୍ୟା।

ଶିବ — ଆଚ୍ଛା, ସେ ପରମହଂସ ମୂର୍ତ୍ତିଏ ଶାଳଗ୍ରାମ ମୁଖରୁ ବାହାର କରନ୍ତି କିପରି ?

ବାବାଜୀ — ବାଜୀକର କେଳା ମୁଖରୁ ଅବିର ଓ ଟଙ୍କା ପଇସା ବାହାର କରେ କିପରି ? ଜଣେ ଇଙ୍ଗରେଜ ବାଜୀକର ଟୋପି ମଧ୍ୟରୁ ଏତେଗୁଡ଼ିଏ ପେଣ୍ଡୁ ବାହାରକଲା ଯେ ସେସବୁ ପୁଣି ଟୋପିରେ ପୂରେଇଲା ବେଳକୁ ତହିଁରେ ସ୍ଥାନ ନ ହେଲା। ସେ ପରମହଂସ ମୁଖରୁ ଗୋଟିଏ ଶାଳଗ୍ରାମ ବାହାର କରିବାର କି ଆଶ୍ଚର୍ଯ୍ୟ ? ଏହା କୁହୁକ ଅଟେ ମହିମା ନୁହେ। ତାହାର ଏପରି ମହିମା ଥିଲେ ସେ ଦ୍ୱାର ଦ୍ୱାର ବୁଲନ୍ତା ନାହିଁ।

ଶିବ — ଆଚ୍ଛା, ତାହା କୁହୁକ ହୋଇପାରେ।

ଜେମସ୍ — ହଉ, କୁହୁକ ହେଲେ କଣ ହେଲା, ମନ୍ତ୍ର ବଳ ତ ହେଲା। ମନ୍ତ୍ରଯୋଗେ କୁହୁକ ହୁଏ ଓ ମହିମା ମଧ୍ୟ ହୁଏ।

ବାବାଜୀ — ଓହୋ। ଏ ବାବୁଙ୍କର ତ ଭାରୀ ଭ୍ରମ। କୁହୁକ ମନ୍ତ୍ର ବଳରେ ହୁଏ ନା, କିମ୍ବା ମନ୍ତ୍ରର କିଛିହିଁ ବଳ ନାହିଁ। ମନ୍ତ୍ରର ବଳ ଥିଲେ ବାଜୀକର କେଳା ଦୁଇଚାରିଅଣା ପାଇଁ ଦ୍ୱାର ଦ୍ୱାର ନ ବୁଲି ମନ୍ତ୍ର ବଳରେ ଟଙ୍କା କଉଡ଼ି ଟାଣି ଆଣୁଥାନ୍ତା। ବାସ୍ତବରେ କେତେ କୁହୁକ ଚତୁରତା ଓ ଚଞ୍ଚଳତାଦ୍ୱାରା ହୁଏ, କେତେକ ଦ୍ରବ୍ୟ ଗୁଣରେ ହୁଏ, କେତେକ କଳ କୌଶଳେ ଓ ଯନ୍ତ୍ର ସହାୟତାରେ ହୁଏ। ଇଙ୍ଗରେଜମାନେ ମନ୍ତ୍ର ମାନନ୍ତି ନାହିଁ କିମ୍ବା ଜାଣନ୍ତି ନାହିଁ, ସେମାନେ କିପରି କେଳାଙ୍କଠାରୁ ଅଧିକ ଚମତ୍କାର କୁହୁକ ଦେଖାନ୍ତି ? ଆମେ ଗୋଟିଏ କୁହୁକ ତୁମକୁ ବୁଝାଇ ଦେଉଚୁଁ ଶୁଣ। ରବର ନାମରେ ଏକପ୍ରକାର ଅଠାବତ୍‌ଦ୍ରବ୍ୟ ଅଛି ତାହା ଟାଣିଲେ ବଢ଼ଇ ଚିପିଲେ ଯାକି ହୁଅଇ। ତହିଁର ପୋଲା ପେଣ୍ଡୁ ଚିପା ହୋଇ ଟୋପିର ଲୁଗା

ମଧ୍ୟରେ ପଶିଥାଏ, ସେ ପେଣ୍ଡୁରେ ରନ୍ଧ୍ର ଥାଏ, ତାହା ଲୁଗା ମଧ୍ୟରୁ ବାହାର କଲେ ବାୟୁ ସହାୟତାରେ ତାହା ଫୁଲି ନିଦାପେଣ୍ଡୁ ପ୍ରାୟ ଦୃଶେ। ସେ ପରମହଂସ କଳାରଙ୍ଗର ସେହିପରି ରବର ପେଣ୍ଡୁକୁ ପାଟି ମଧ୍ୟରେ ପୂର୍ବରୁ ଯାକି ରଖିଥିଲା, ତୁମ ସାକ୍ଷାତରେ ତୁଣ୍ଡରୁ ବାହାର କଲାରୁ ତାହା ଫୁଲି ଶାଳଗ୍ରାମ ତୁଲ୍ୟ ଦୃଶ୍ୟ ହେଲା, ପୁଣି ତାହା ମୁହଁ ମଧ୍ୟରେ ପୂରେଇ କଳରେ ଯାକି ରଖିଲା, ପଶ୍ଚାତ୍ ବାହାର କରି ଗଣ୍ଡରୀ ମଧ୍ୟରେ ରଖିଥିବ। ଏହିପ୍ରକାର ସୂତ୍ରରେ ସବୁ କୁହୁକ ହୁଏ। ବୁଝିଲ ?

ଶିବ — ହଁ ମହାରାଜ, ବୁଝିଲୁଁ।

ବାବାଜୀ — କୌଣସି ଧର୍ମରେ ତୁମର ବିଶ୍ୱାସ ହଉ ନାହିଁ, ସର୍ବ କର୍ତ୍ତା ଈଶ୍ୱରଙ୍କଠାରେ ମତି ହଉ ନାହିଁ, ଅସମ୍ଭବ କଥାରେ ବିଶ୍ୱାସ ହଉଚି ଓ ଅଳୀକ ଆମୋଦ ପ୍ରମୋଦରେ ମତି ରହିଚି, ବଡ଼ ଆଶ୍ଚର୍ଯ୍ୟ ଓ ଦୁଃଖର ବିଷୟ। (ଜେମସ୍‌ପ୍ରତି) ତୁମେ ହିନ୍ଦୁଧର୍ମର ସାର କଥାରେ ଅବିଶ୍ୱାସ କରି ସେ ଧର୍ମ ତ୍ୟାଗ କଲ ମାତ୍ର ଅସାର କଥାରେ ସମ୍ପୂର୍ଣ୍ଣ ବିଶ୍ୱାସ ଅଛି, ଅଜ୍ଞାନତା ଓ କୁସଂସ୍କାର ଲେଶମାତ୍ର ଯାଇ ନାହିଁ। ଜ୍ଞାନ ଧର୍ମ ଶିକ୍ଷା କରି ମନୁଷ୍ୟ ଜନ୍ମ ସଫଳ କର। ଏଥିରେ ତୁମମାନଙ୍କର ପ୍ରକୃତ ମଙ୍ଗଳ ହବ। ଆଚ୍ଛା ବର୍ତ୍ତମାନ ଆସ ତୁମର ଦଣ୍ଡବତୀ ଫେରିନିଅ।

ଶିବ — ଆପଣଙ୍କୁ ଦେଇଚୁଁ ଆଉ କାହିଁକି ଫେରି ନବୁଁ।

ବାବାଜୀ — ଟଙ୍କା କଉଡ଼ିରେ ଆମର କିଛି କାର୍ଯ୍ୟ ନ ଥାଏ, ଆମର ତା କଣ ହବ, ତୁମର କିଛି କାର୍ଯ୍ୟରେ ଆସିପାରେ। ନିଷ୍ପ୍ରୟୋଜନରେ ଦବା ନବାର ଉଚିତ ନୁହେ। ଆମେ ନବୁଁ ନାହିଁ, ତୁମେ ଫେରି ନିଅ।

ଜେମସ୍ — (ସ୍ୱଗତ) ବାବାଜୀତ ଆମ ପାଦରି ସାହେବ ପରି ବୁଝେଇଲେ, କୁସଂସ୍କାର ବିଷୟରେ ସାହେବ ଯାହା କହନ୍ତି ତେବେ ତାହା ସତ ଅଟେ।

ଶିବ ଓ: — (ପ୍ରଣାମି ଫେରି ନେଇ) ଆଚ୍ଛା, ମହାରାଜ! ଆମେ ଆସୁଚୁଁ।

ଜେମସ୍ — ଦଣ୍ଡବତ୍।

ବାବାଜୀ ମଙ୍ଗଳ ହଉ, ଧର୍ମରେ ମତି ଓ ଈଶ୍ୱରଙ୍କଠାରେ ଭକ୍ତି ହଉ।

(ଶିବ ଓ ଜେମସ୍‌ଙ୍କ ପ୍ରସ୍ଥାନ)

(ଆନନ୍ଦ ପୂଜାରିର ପ୍ରବେଶ)

ବାବାଜୀ କିରେ ବାବା, ପୁଣି କାହିଁକି ?

ପୂଝାରୀ ମହାରାଜ ! ଆଜି ମୁଁ ବଡ଼ ଅପରାଧ କରିଚି, ଆପଣ ଆସିଲା ବେଳୁଁ ମୋ ମନ ଯେପରି ସନ୍ତାପିତ ହେଇଚି ତାହା ମୋ ମନଇ ଜାଣେ। ଆପଣଙ୍କୁ ଭୋଜନ ନ କରାଇଲେ ମୋ ମନ ସ୍ଥିର ହବ ନାହିଁ। ଠାକୁରଙ୍କର ପ୍ରସାଦ ଆଣିଚି, ଆପଣ ଅନୁଗ୍ରହ କରି ଏହା ଘେନା କରିବା ହଉନ୍ତୁ, ନ କଲେ ମୁଁ ଅତି ଦୁଃଖିତ ହେବି, ମରଣ ତୁଲ୍ୟ ତ ହବ, ଅଧିକ କଣ କହିବି !

ବାବାଜୀ ଆମ ପାଇଁ ପ୍ରସାଦ ଆଣିଚୁ। ଆଚ୍ଛା ଆଚ୍ଛା, ତୋର ଏପରି ସୁମତିରେ ଆମେ ଅତି ସନ୍ତୁଷ୍ଟ ହେଲୁଁ। କିନ୍ତୁ ଆମେ ତୋତେ ଗୋଟିଏ ଗୁପ୍ତ ପ୍ରସଙ୍ଗ ପଚାରିବା, ତୁ ସତ୍ୟ କହିବାର ପ୍ରତିଜ୍ଞା କଲେ ଆମେ ପ୍ରସାଦ ପାଇବା, ନଚେତ୍ ଗ୍ରହଣ କରିବା ନାହିଁ।

ପୂଝାରୀ ମହାରାଜ ! ମୁଁ ଯାହା ଜାଣିଥିବି ଅବଶ୍ୟ କହିବି। ଆପଣ ଭୋଜନରେ ବସନ୍ତୁ। କଥାବାର୍ତ୍ତା ହବା, ଭୋଜନ ବେଳେ ଗପ ହେଲେ ବଡ଼ ସୁଖ ହୁଅଇ।

ବାବାଜୀ ସତ, ଆଚ୍ଛା କଣ ଆଣିଚୁ ଆଣ୍।

(ବାବାଜୀ ଭୋଜନରେ ବସିଲାରୁ)

ପୂଝାରୀ ଏସ୍ଥାନଟି ଅତି ଉତ୍ତମ, ବଡ଼ ନିରୋଳା, ଲୋକଙ୍କର ଅଧିକ ଗତାୟାତ ନାହିଁ, ଆପଣଙ୍କୁ ଭଲ ହେଉଥିବ।

ବାବାଜୀ ନାହିଁ ବାବା, ତୋରି ଯୋଗେ ଦୁଇଚାରି ଲୋକ ଆସି ଆମକୁ ବିରକ୍ତ କଲେଣି।

ପୂଝାରୀ ମୋ ଯୋଗେ କିପରି ମହାରାଜ !

ବାବାଜୀ ତୁ ଉପହାସରେ ଆମର ମହିମା କଥା ଯାହା କହିଥିଲୁ ଲୋକେ ତାହା ସତ ବୁଝି ଆମଠାରୁ ଆପଣା କାମନା ସିଦ୍ଧି ପାଇଁ ଆସିଥିଲେ। ଭଲା ଏପରି ମିଥ୍ୟା କଥା କିପରି ରଟାଇ ଦେଲୁ।

ପୂଝାରୀ ମହାରାଜ ! ମୁଁ କାହାରିକୁ ଏ ପ୍ରସଙ୍ଗ କିଛି କହି ନାହିଁ। ତାମା ସେ କଥା ଭଣା ଅଧିକରେ କାହାରିକୁ କହିଥିବ, ସେ ବ୍ୟକ୍ତି ତହିଁରେ ଆଉ କିଛି ବ୍ୟତିକ୍ରମ କରିଥିବ, ଏହି ପ୍ରକାରେ ସେ କଥା ସତ୍ୟପ୍ରାୟ ଉଠିଥିବ। ମୂର୍ଖଲୋକେ କୌଣସି କଥା ଠିକ କରି ବୁଝିବେ ନାହିଁ ନା ଠିକ୍ କରି କହିବେ ନାହିଁ ଝାଡ଼ାବାନ୍ତି ରୋଗ ଉପସ୍ଥିତ ହେଲେ ନାନାଦି ଅସମ୍ଭବ କଥା ବାହାରେ, କାଳଶୀମାନେ ଠାକୁରାଣୀ ଲାଗିବାର ଛଟା କରି ନାନାଦି କଥା କହି ଆପ୍ଣା ପଣେ ଉପାର୍ଜନ କରନ୍ତି ବା ମାନ୍ୟ ପାନ୍ତି। ଖଳଲୋକେ କିଛି ଲାଭାଶାରେ ବା କୌତୁକ ଦେଖିବା ପାଇଁ ନାନାଦି ଆଜ୍ଞାପତ୍ରିକା ବାହାର କରନ୍ତି। ପ୍ରାୟ ସମସ୍ତେ ତହିଁରେ ବିଶ୍ୱାସ କରି ତଦନୁସାରେ କାର୍ଯ୍ୟ କରନ୍ତି। ଅଜ୍ଞ ଇତରଲୋକଙ୍କ କଥା ତେଣିକି ଥାଉ, କେତେକ ବାବୁଭୟା ମଧ ଏସବୁ ମାନନ୍ତି, କିନ୍ତୁ ମୁଁ ମାନେ ନା, ମୁଁ ଦୁଷ୍ଟ ହେଲେ କଣ ହେଲା ମୋର ବୁଦ୍ଧି ଅଛି ସାହସ ଅଛି, ମୁଁ ମୁଦା ଧରି କେତେ କାଳଶୀଙ୍କୁ ଭଣ୍ଡୋର କରିଦେଇଚି।

ବାବାଜୀ ଲୋକେ ଏପରି ଅବୋଧ, ବଡ଼ ଦୁଃଖର ବିଷୟ। ବାବୁଙ୍କର ସବୁ କୁଶଳତ ?

ପୂଝାରୀ ଥାଜି ବାବୁଙ୍କର ଅନନ୍ତ ଶଯ୍ୟା କାଲିକୁ ଯେପରି ହବ। ଆଜି ସେ ନିଶ୍ଚିନ୍ତ ଆମେ ନିଶ୍ଚିନ୍ତ, ହଁ ସବୁ କୁଶଳ।

ବାବାଜୀ ତୋର ଅନ୍ନଦାତାଙ୍କୁ ଉପହାସ କରୁଚୁ।

ପୂଝାରୀ ନାହିଁ ଉପହାସ କରୁ ନାହିଁ ଯେ। ମୁଁ କେତେବେଳେ କେମନ୍ତେ ଟିକିଏ ରଙ୍ଗରେ କଥା କହିଦିଏଁ। ବାବୁଙ୍କ ସଙ୍ଗରେ ମଧ ଦୁଃଖସୁଖ ପଡ଼େ, ହସ କୌତୁକ ହୁଏ। ଆପ୍ଣା ବାବୁ ଯେପରି ଗୁଣବନ୍ତ ସେହିପରି ଶାନ୍ତ ଓ ଦୟାବନ୍ତ, ରାଗ ଅହଙ୍କାର ଟିକିଏ ନାହିଁ। ଆପଣ କି ଗୁପ୍ତକଥା ପଚାରିବାର କହୁଥିଲେ ?

ବାବାଜୀ ସତ କହିବୁଟିକି, କପଟ କରିବୁ ତ ନାହିଁ ?

ପୂଝାରୀ ନାହିଁ ମହାରାଜ, କପଟ କରିବି ନାହିଁ। ଥରେ ହୁଡ଼ିଲି ବୋଲି କି ସବୁଥର ହୁଡ଼ିବି। ଲୋକ ଦେଖି ବ୍ୟବହାର କରିବାକୁ ହୁଏ ନା ?

ବାବାଜୀ "ଲୋକ ଦେଖି ବ୍ୟବହାର କରିବାକୁ ହୁଏ" ଏଥିର ଅର୍ଥ କଣ ?

ପୂଝାରୀ ଭଲଲୋକ ସଙ୍ଗରେ ଭଲ ବ୍ୟବହାର, ମନ୍ଦଲୋକ ସହିତ ମନ୍ଦ ବ୍ୟବହାର। ଯେ ମୋର ମନ୍ଦ କଲା ମୁଁ ତାକୁ କାହିଁକି ଛାଡ଼ିବି, ମୁଁ ମଧ୍ୟ ତାହାର ମନ୍ଦ କରିବି।

ବାବାଜୀ ନା ନା, ଏହା ଉଚିତ ନୁହେ, ଯେଉଁ ବ୍ୟକ୍ତି ତୋହର ମନ୍ଦ କଲା ସେ ଦୋଷୀ ହେଲା, ସେ ତହିଁର ଦଣ୍ଡ ଇହକାଳ ବା ପରକାଳରେ ନିଶ୍ଚୟ ପାଇବ। ତୁ ଯେବେ ତାହାର ମନ୍ଦ କଲୁ, ତୁ ମଧ୍ୟ ସେହିପରି ଦୋଷୀ ହେଲୁ, ସେହିପରି ଦଣ୍ଡ ପାଇବୁ। ତେବେ ତୋର ଲାଭ ହେଲା କଣ ? କାହାରି ପ୍ରତି ଅଯଥାର୍ଥ ବ୍ୟବହାର କରିବାର ଉଚିତ ନୁହେ।

ପୂଝାରୀ ସତ ସେତେ ଜ୍ଞାନ ଆମର ନ ହେବାରୁ ତ ଏପରି ଦଶା। ଗୁପ୍ତକଥାଟି କଣ କହିବା ହେଉନ୍ତୁ।

ବାବାଜୀ ତୁ ଗାରଡ଼ି ବିଦ୍ୟା ଜାଣୁ ?

ପୂଝାରୀ ହଁ ମହାରାଜ, ମୁଁ ଆଛା ଜାଣେ।

ବାବାଜୀ ହନୁସିଂହର ଭାର୍ଯ୍ୟାଠୁ ତୁ ଭୂତ ଛଡ଼ାଉଥିବାର ଆମେ ଶୁଣିଚୁଁ ତହିଁର ପ୍ରକୃତ କଥା କହିନି ?

ପୂଝାରୀ ମହାରାଜ। "ଷଟକର୍ଣ୍ଣ ମନ୍ତ୍ରଭେଦ" ଏପରି ନିଷେଧ ଅଛି ମୁଁ ତା କହିବି ନାହିଁ, ତାହା ପ୍ରକାଶ ହେଲେ ମୋ ବୃତ୍ତି ମରିଯିବ। ମୋ ଦୋଷ କ୍ଷମା କର।

ବାବାଜୀ ଆମେ ନିଶ୍ଚୟ କହୁଚୁଁ ତୋ କଥା କଦାପି ପ୍ରକାଶ କରିବୁ ନାହିଁ। କାଲି ତ ଆମେ ଏଠାରୁ ଚାଲି ଯିବା, କହିବା ଅବା, କାହା ଆଗରେ। ଗୁଣି ବୃତ୍ତିଟି ଠକ ବୃତ୍ତି ଆମେ ଏହା ଜାଣୁ ଏଥିଲାଗି "ଷଟ୍‌କର୍ଣ୍ଣ ମନ୍ତ୍ରଭେଦ" ନିଷେଧ ବିଧିଟି ହୋଇଛି। ତୁ କିପରି ଠକୁ ଏତିକି ଜାଣିବାର ଆମର ଇଚ୍ଛା। ତୁ ଯେବେ ପ୍ରକାଶ ଲଙ୍ଘନ କରିବୁ ତେବେ ଆମେ ଆଉ ଭୋଜନ କରିବୁଁ ନାହିଁ।

ପୂଝାରୀ ମୁଁ କହୁଚି, ମହାରାଜ ଭୋଜନ କରନ୍ତୁ ଆପଣଙ୍କୁ ଦୋହି ପରମେଶ୍ୱରଙ୍କର କଦାପି ପ୍ରକାଶ କରିବେ ନାହିଁ। ହନୁ ସିଂହର ଭାର୍ଯ୍ୟା ସଙ୍ଗେ ମୋର ପ୍ରଣୟ ଅଛି। ମୋର ନାମ ତାହାର

ହବା ସକାଶେ ମୋହରି ଶିକ୍ଷାରେ ସେ ଛଟା କରିଥିଲା, ଗୁଣିମାନେ ଝାଡ଼ିଲାବେଳକୁ ସେମାନଙ୍କ ଉପରେ ଚଢ଼ି ବସିଲା। ମୋରି ଜଣେ ସଙ୍ଗୀ ଅଛି, ସଙ୍ଗୀ ନ ଥିଲେ ଗୁଣିବିଦ୍ୟା ଭଲ ଚଳଇ ନାହିଁ। ସେ ହନୁ ସିଂହ ନିକଟରେ ମୋର ଭାରି ପ୍ରଶଂସା କରିବାକୁ ହନୁ ମୋତେ ଡାକିଲା। ମୁଁ ଯାଇଁ ତାହାର ଭାର୍ଯ୍ୟାକୁ ଝାଡ଼ିଲାମାତ୍ରକେ ସେ ଭଲ ହୋଇଗଲା ତହୁଁ ମୋର ନାମ ଖ୍ୟାତ ହେଲା। ଏବେ ଯୋଉଠି ଭୂତ ଲାଗୁଚି ଆଗେ ମୋତେ ଡାକରା ପଡୁଚି, ଭୂତତ ମିଛ, ସେମାନେ ଆପଣାର କିଛି ଅଭିପ୍ରାୟରେ ଛଟା କରିଥାନ୍ତି, କଟୁ ନାସରେ ଆୟର ହୁଅନ୍ତି। ଛଟା ନ ଥିଲେ ବାତ ପିତ୍ତ ବା ଅନ୍ୟ କିଛି ରୋଗ ଥାଏ, ମାତ୍ର ଏହା କ୍ୱଚିତ୍ ଘଟେ।

ବାବାଜୀ — ତେବେ ତୁହି ଭୂତ ହୋଇ ଲାଗିଲୁ ତୁହି ଗୁଣିଆ ହୋଇ ଝାଡ଼ିଲୁ। ଏତିକିରେ ତୋର ନାମ ବାହାରିଲା, ନା, ଆଉ କିଛି ଉପାୟ କରିଥିଲୁ।

ପୂଜାରୀ — ଆଉ କିଛି କରିଥିଲି—ଜଣକୁ ତିନିଟଙ୍କା ଦେଇ କରଗତ କଲି। ଖଣ୍ଡେ ଭଙ୍ଗା ଛୁଞ୍ଚି ନଖ ଓ ଚେରକୁ ବାଳରେ ଗୁଡ଼େଇ ତାକୁ ଦେଇ କହିଲି କି ଯେତେବେଳେ ମୋ ନିକଟରେ ଅନେକ ଲୋକ ଥିବେ ତୁ ତେତେବେଳେ ମୋଠାକୁ ଏହାକୁ ଘେନି ଆସି କହିବୁ—ପୂଝାରୀ। ଆପଣ କାଲି ସେ ପାଣି ମନ୍ତ୍ରି ଦେଇଥିଲ ସେ ପାଣି ପିଇବାର ଘଣ୍ଟାକରେ ବାନ୍ତି ହୋଇ ଓ ଔଷଧ ମୋ ପେଟରୁ ବାହାରି ପଡ଼ିଲା। ଆଜି ମୋ ଦେହ ବାରପଣରେ ଭଲ ହେଇଚି। ମୁଁ ରୋଗ ବୁଝି କେତେ ଔଷଧ କଲି କିଛି ଧଇଲା ନାହିଁ। ଏହି କିମିଆଡ ମୋତେ ଖାଉଥିଲା ଔଷଧ ଗୁଣ କରନ୍ତା କୁଆଡୁ। ମୋ ପ୍ରାଣ ଉପରେ ପଡ଼ିଥିଲା ଆପଣଙ୍କ ଯୋଗେ ପ୍ରାଣ ପାଇଲି। ଏହା କହି ମୋତେ ଟଙ୍କାଟିଏ ଦେଇ ଗୋଡ଼ତଳେ ପଡ଼ିବୁ ବାକୀ ଦୁଇଟଙ୍କା ତୋହୋର। ସେ ଠିକ୍ ଏହପରି କଲା, ଦେଖିବା ଲୋକେ ଚକିତ ହୋଇ ମୋର ବଡ଼ ପ୍ରଶଂସା କଲେ, ମୋ ନା ବାଜି ଗଲା।

ବାବାଜୀ ଆଚ୍ଛା, ବଳୀ ମାହାନ୍ତି ଘରେ ଭୂତର ଉତ୍ପାତ ବୃତ୍ତାନ୍ତ କହିଲୁ ?

ପୂଝାରୀ ବଳୀ ମାହାନ୍ତି ସଙ୍ଗେ ମାଗୁଣୀ ମାହାନ୍ତିର ଭାରୀ ବିବାଦ। ବଳୀ ଘରେ ଭୂତ ବା ବୀର ବାଉତୀର ଉତ୍ପାତ କରାଇବା ପାଇଁ ମାଗୁଣୀ ମୋତେ ଦଶଟଙ୍କା ଯାଚିଲା। ତହୁଁ ମୁଁ ବଳିର ଦାସୀକୁ କରଗତ କରି ତାହାଦ୍ୱାରା ଓ ମୋହୋର ସଙ୍ଗି ଦ୍ୱାରା ତାହା ଘରେ ନାନାଦି ଉପଦ୍ରବ କରେଇଲି। ଏଥି ମଧ୍ୟରେ ମୋର କପାଳ ସୁଯୋଗକୁ ଦିନେ ରାତ୍ରରେ ବଳିର ବଡ଼ପୁଅ ନିଦବାଉଳା ରୋଗରେ ଅଚେତନ ଅବସ୍ଥାରେ ଦୁଇପା ବାଟ ଚାଲି ଯାଇ ଗୋଟିଏ ଗଡ଼ିଆରେ ପଡ଼ିଯିବାରୁ ତାହାର ଚେତନା ହେଲା। ଏ ରୋଗର ଲକ୍ଷଣ ଏହି ପ୍ରକାର, କିନ୍ତୁ ଲୋକେ ବୁଝିଲେ ଭୂତ ତାକୁ ଉଠେଇ ନେଇ ଗଡ଼ିଆରେ ମାଡ଼ି ଦେଲା। ବଳୀ ବଡ଼ କାତର ହୋଇ ମୋତେ ପନ୍ଦର ଟଙ୍କା ଯାଚିବାରୁ ଲୋକ ଦେଖିବାକୁ ପୂଜା କରି କୁକୁଡ଼ା ବଳି ଦେଲି, ଡାକ୍ତରଠାରୁ ଔଷଧ ମାଗି ଆଣି ତାହାର ପୁଅକୁ ଖୁଆଇଲି, ସବୁ ଶାନ୍ତ ହୋଇଗଲା। ବିଟପୀ ସ୍ତ୍ରୀଙ୍କ ଯୋଗେ ମଧ ଏହି ପରି ଭୂତ ବା ବୀରର ଉତ୍ପାତ ହୋଇଥାଏ। ଜଣେ ବଙ୍ଗାଳୀ ବ୍ରାହ୍ମଣ ଆପଣାର ମନ୍ଦ କାମନାର ସୁବିଧା ପାଇଁ ଜୀନ ଭୂତର ଉତ୍ପାତ ଏପରି ଭଙ୍ଗିରେ ରଚନା କଲା ଯେ ଭୟରେ ତାହାର ଘର ଲୋକେ ଜୀବ ସକାଶେ ଗୋଟିଏ ଘର ଛାଡ଼ିଦେଲେ। ବର୍ଷେ କାଳ ଏହିପରି ଚଳିଗଲା, ଦୈବୀ ଦିନେ ଜୀନ ଭୂତ (ବିଟପୁରୁଷ) ସେ ସ୍ତ୍ରୀର ସ୍ୱାମୀ ଦ୍ୱାରା ଧରା ପଡ଼ିବାରୁ ଉତ୍ପାତ ହେଲା।

ବାବାଜୀ ଆଉ କଣ ଜାଣୁ କହିଲୁ ?

ପୂଝାରୀ ମୋର ତ ସବୁ ବିଦ୍ୟା ନେବ ମୁଁ ଆଉ କରିବି କଣ ?

ବାବାଜୀ ଆରେ ଆମେ କାହିଁକି ତୋର ବିଦ୍ୟା ନେବା, ଶୁଣିବାକୁ କୌତୁକ ଲାଗୁଚି କହ, କହ।

ପୂଝାରୀ —ଏ ଦେଶରେ ଉତ୍ତମ ବଇଦ ନ ଥିବାରୁ ରୋଗ ବିଷୟରେ ଭାରୀ ଭ୍ରମ ଅଛି। ରକ୍ତପିତ ରୋଗରେ ରକ୍ତ ବାନ୍ତି ହେଲେ କିମ୍ବା କୌଣସି ବାତ ରୋଗରେ ଦେହରେ ଛୁଞ୍ଚ ମାଇଲା ପରି ଜଣା ଗଲେ ଲୋକେ ତାହା ବାଣସିଂହାର ବୋଲି ବିଶ୍ୱାସ କରନ୍ତି। ବାତ ବା ମନ୍ଦାଗ୍ନି ରୋଗରେ ରୋଗୀ ଅତି କ୍ଷୀଣ ଓ

ଦୁର୍ବଳ ହେଲେ ତାକୁ କେହି ସୁକମଦରଙ୍ଗା ବା କତରାଇଗା କିମିଆ କରିଥିବାର ଲୋକେ ମନେ କରନ୍ତି। କୌଣସି ରୋଗ ଚିହ୍ନା ନ ଗଲେ କିମ୍ବା ଚିକିତ୍ସା ଦୋଷରେ ଦେହ ବିକୃତ ଭାବ ଧଇଲେ ରୋଗିକୁ କେହି କିଛି ଯାଦୁ ଟୁଣା କରିଥିବାର ବିଶ୍ୱାସ ହୁଏ। ଏ ସ୍ଥଳେ ଆମର ଉପାୟ ହୁଏ। କୌଣସି କୌଣସି ସ୍ଥଳେ ଆମେ ରୋଗୀ ପେଟରୁ ଯାଦୁ ଓଷଧ ବାହାର କରି ଦେଖାଇ ଦେଉଁ।

ବାବାଜୀ — ଏହା କି ପ୍ରକାର ହୁଏ ?

ପୂଝାରୀ — ଟିକିଏ ଚେର ଓ ନଖକୁ ବାଳରେ ଗୁଡ଼େଇ ପୂର୍ବରୁ ପାଟି ମଧରେ ଯାକି ରଖୁଁ। କିଛି ପୂଜା କରି ରୋଗୀ ପେଟରେ ଛୋଟ ନଳଟିଏ ବସେଇ ମାଡ଼ି ଦେଉଁ ଓ ନଳ ଉଠେଇ ହଟାତ୍ ଫୁଙ୍କି ଦେଉ, ଫୁଙ୍କ ସହିତ ସେ କୃତ୍ରିମ ଓଷଧ ନଳ ମଧରେ ଯାଇ ତଳେ ପଡ଼େ। ଲୋକେ ବୁଝନ୍ତି ମନ୍ତ୍ର ବଳରେ ଓଷଧ ପେଟରୁ ବାହାରି ପଡ଼ିଲା। ତୌଣସି ସ୍ଥଳେ କେବଳ ପୂଜା କରୁଁ, ଏଣେ ବଦ୍ୟଚିକିତ୍ସା ମଧ ହେଉଥାଏ, ଦୈବୀ କେହି କେହି ଭଲ ହେଲେ ଗୁଣିର ନାମ ହୁଏ। ମାତ୍ର କେବଳ ଗୁଣୀ ଉପରେ ନିର୍ଭର କରି ଅନେକ ଲୋକ ମରା ପଡ଼ିଚନ୍ତି କିନ୍ତୁ ଜଣେ ବାବୁଙ୍କୁ ମୁଁ ଭଲ କରିଚି। ତାଙ୍କୁ ଜ୍ୱର ରୋଗରେ ବଇଦ ଅତି ଗରମ ଓଷଧ ଖୁଆଇବାରୁ ଜ୍ୱର ଭଣା ହେଲା ମାତ୍ର ଗରମ ଯୋଗେ ଅରୁଚି, କଣ୍ଠ ଶୁଷ୍କ ଦେହର ଦାହ ଇତ୍ୟାଦିରେ ବାବୁ ଶଯ୍ୟାଗତ ହେଲେ। ବଇଦର ବୁଦ୍ଧି ବଣା ହେଲା। ସେ କହିଲା ନାଡ଼ିରେ ଜର ନାହିଁ ଏସବୁ କିମିଆର ଫିସାଦ। ତହୁଁ ବାବୁ ମୋତେ ଡାକିଲେ। ମୁଁ ଗରମ କଥା ବୁଝି ପାରିଲି ମାତ୍ର ତାହା ପ୍ରକାଶ ନ କରି ବାବୁଙ୍କୁ କାଟପାଣି ପିଆଇଲି। ମନ୍ତ୍ର ହଳଦି ଲଗାଇବାକୁ ଦେଲି ଓ ପୂଜା କଲା ଜଳରେ ସ୍ନାନ କରାଇଲି। ଏହି ଶୀତଳ ଉପଚାରରେ ବାବୁ ଭଲ ହେଲେ। ଆହାର ଦୋଷରେ ଅଜୀର୍ଣ୍ଣ ହେଲେ ଭୋଜନରେ କାହାରି ମନ୍ଦ ଦୃଷ୍ଟି ହୋଇଥିବାର ଓ ବାଇ ଯୋଗେ ଅଥବା ଧାତୁ ଗୁଣେ ପ୍ରସବ ବେଦନା ଅଧିକ ହେଲେ ତାକୁ କେହି

ବହି ଥିବାର ବିଶ୍ୱାସ ହୁଏ। ଏ ସ୍ଥଳେ ପାଣି ମନ୍ତ୍ରି ଦେଇଁ, ପାଣି ଯୋଗେ ଅବା ସ୍ୱଭାବରେ ଭଲ ହେଲେ ମନ୍ତ୍ରର ନାମ ହୁଏ। ସବୁ ମନ୍ତ୍ର ଏହିପ୍ରକାର, ମାତ୍ର ସାପ ମନ୍ତ୍ର ମତେ କିଛି ଠିକ ବୋଧ ହୁଏ କାରଣ ମୁଁ କେବେ କେବେ କେବଳ ମନ୍ତ୍ର ଯୋଗେ ବିଷ ଉତାରିଚି।

ବାବାଜୀ — ନା ନା, ତାହା ମଧ ଠିକ ନୁହେ। ତହିଁର କଥା ତେବେ ତୁ ବୁଝି ନାହୁଁ। ଯେଉଁ ସ୍ଥଳରେ କେବଳ ମନ୍ତ୍ର ଯୋଗେ ବିଷ ଉତୁରେ ସେ ସ୍ଥଳେ ଆଦୌ ବିଷ ନ ଥାଏ। ପୃଥିବୀରେ ସର୍ବସୁଦ୍ଧା ୨୬୫ ଜାତିର ସର୍ପ ଅଛନ୍ତି। ତହିଁମଧରେ କେବଳ ୫୮ ଜାତିର ବିଷ ଅଛି ବାକୀ ସର୍ପର ବିଷ ନାହିଁ। ବିଷାକ୍ତ ସର୍ପ ମଧ କୁପିତ ନ ହୋଇ କାମୁଡ଼ିଲେ କିମ୍ୱା ତାହାର ବିଷଦନ୍ତ ଝଡ଼ି ଯାଇଥିଲେ ବିଷ ଚଢ଼ଇ ନାହିଁ। ଏପରି ଦଂଶନ ସ୍ଥଳେ କେବଳ ଭୟରେ ଦଂଶିତ ବ୍ୟକ୍ତିକୁ ବିଷଜ୍ୱାଳା ଜଣାଯାଏ ଓ କେହି କେହି ମୂର୍ଚ୍ଛା ହୋଇ ପଡ଼ନ୍ତି। ବ୍ରହ୍ମଚାପଡ଼ା, ଆଁଉସିବା, ଫୁଁକ ଓ ପାଣି ଯୋଗେ ଭୟ ଭାଙ୍ଗେ ଓ ଚେତନା ହୁଏ କିନ୍ତୁ ମନ୍ତ୍ରର ନାମ ହୁଏ।

ପୂଝାରୀ — ହଁ, ଏଇତା ହବ, ଠିକ କଥା, ମନ୍ତ୍ରର ବଳ ଥିଲେ ଝାଡ଼ୁ ଝାଡ଼ୁ ବିଷ ଚଢ଼ନ୍ତା ନାହିଁ, ନା କେହି ମରନ୍ତେ ନାହିଁ।

ବାବାଜୀ — ଆଉ କଣ ଜାଣୁ ?

ପୂଝାରୀ — କଞ୍ଚା କଣିକୁ ଚିରି ଦୁଇଫାଳକୁ ଚିରାପାଖ ଭିତରକୁ କରି ଦୁଇଜଣ ଦୁଇମୁଣ୍ଡ ଧଇଲେ ଦୁଇଫାଳ ଆପଣାସୁଖେ ଟାଣି ହୋଇ ମଝିରେ ଲାଗିଯାଏ। ସ୍ୱଭାବରେ ଏପରି ହୁଏ କିନ୍ତୁ ମୁଁ ଏହା କେତେକ ଉପାୟରେ ପ୍ରୟୋଗ କଲେ ଲୋକେ ବୁଝନ୍ତି ମନ୍ତ୍ର ବଳରେ ଦୁଇଫାଳ ଲାଗିଯାଏ। ମାମଲତକାରଠାରୁ ପୂଜା ଖର୍ଚ୍ଚା ନେଇ ମକଦ୍ଦମାର ଅବସ୍ଥା ଦୃଷ୍ଟିରେ ଡିଗ୍ରୀ ହବାର ସମ୍ଭବ ଦିଶିଲେ ଜୟ ହବାର କହେଁ, ନଚେତ୍ କିଛି କଷ୍ଟ ଲେଖିବାର କହେଁ। ତାଲସୁପାରି ଲଢ଼େଇରେ ଯେତେ କାଣ୍ଡ ହୁଏ ସେ ସବୁ ଦୁଇ ଗୁଣିଙ୍କ ଯୋଗ ସାଜସରେ ହୁଅଇ।

କିଣିବା ବ୍ୟକ୍ତି ଯାହା ପାଏ ତାହା ଦୁହେଁ ପଶ୍ଚାତ୍ ବାଣ୍ଟି ନିଅନ୍ତି। ଏହିପରି ମୁଁ ଯେତେ ଜାଣେ ସେ ସବୁ କହିଲେ ରାତି ପାହାଯିବ। ଆପଣ ତ ଜାଣନ୍ତି ମନ୍ତ୍ର ଯୋଗେ ଭଲ ମନ୍ଦ କିଛି ହୋଇ ନ ପାରେ ମୁଁ ଅଧିକ କଣ କହିବି। ଏତିକି କହୁଚି ଏହା ପ୍ରକାଶ କରି ମୋ ଦାନାରେ ଧୂଳି ଦେବେ ନାହିଁ।

ବାବାଜୀ କଳିକାଳର ବ୍ରାହ୍ମଣ ଗାୟତ୍ରୀ ଛାଡ଼ି ଗାରଡ଼ି ଶିଖିବାର କଥାଟି ଠିକ ଅଟେ।

ପୂଝାରୀ ମୁଁ ଗାୟତ୍ରୀ ଶିଖି ନାହିଁ କି ?

ବାବାଜୀ କଣ ଶିଖିଚୁ କହିଲୁ ?

ପୂଝାରୀ ମହାରାଜ ! ଆପଣଙ୍କଠାରେ କଣ କପଟ କରିବି, ଗାୟତ୍ରୀ ପଦେ ମନେ ପଡ଼ୁଚି ପଦେ ମନେ ପଡ଼ୁନାହିଁ। ପିଲାଦିନେ ଗାୟତ୍ରୀ ଓ ପୂଜା ମନ୍ତ୍ରଗୁଡ଼ିଏ ଶିଖିଥିଲି, ବର୍ତ୍ତମାନକୁ ଅନେକ ପାସୋର ଗଲାଣି।

ବାବାଜୀ ତେବେ ଠାକୁର ପୂଜା କରୁ କିପରି ?

ପୂଝାରୀ ମାତ୍ର ଡାକି ଉଠା ଥାକି, ନାକ କାନ ଛୁଇଁ ଘଣ୍ଟା ବଜେଇଲେ ହେଲା। ଠାକୁରଙ୍କୁ ବେଶ କରି ଦେଲେ ଲୋକେ ଦେଖି ପ୍ରେମରେ ଗଡ଼ିଯାନ୍ତି, ମନ୍ତ୍ର କଥା କିଏ ବୁଝୁଚି। ଅନେକ ପୂଝାରିଙ୍କ ପୂଜା ଏହିପ୍ରକାର।

ବାବାଜୀ ତୁ ବୃଦ୍ଧ ଠକଟିଏ। ହଁ, ‘‘ରଜା ଖାଏ ତଣ୍ଡି, କେଳା ଖାଏ ଭଣ୍ଡି’’।

ପୂଝାରୀ ମୁଁ ଠକ କିପରି ? ଗୁଣି ବ୍ୟବସାୟ ତ ଏହିପ୍ରକାର ମୁଁ ତ ଗୁରୁଠାରୁ ଏହିପରି ଶିକ୍ଷା ପାଇଚି। ଅନ୍ୟଲୋକ ପରି ଗୁଣି ବିଦ୍ୟାରେ ମୋର ବିଶ୍ୱାସ ଥିବାରୁ ବୀରସାଧନା କରିବାର ମୋର ବଡ଼ ଇଚ୍ଛା ହେଲା, ତହୁଁ ମୁଁ ଜଣେ ପ୍ରଧାନ ଗୁଣିକୁ ଗୁରୁ କଲି। ସେ ମୋତେ ଏହିପ୍ରକାର ଶିକ୍ଷା ଦେଇ କହିଲେ ମନ୍ତ୍ର ଭୂତ ବୀର ବାଉତୀ ସବୁ ମିଛ ସେଥିର ଲୋକଙ୍କୁ କହିବାକୁ ହୁଏ। ମୁଁ ତ ଏକା ନୁହେଁ ସକଳ ଗୁଣିଙ୍କର କାଣ୍ଡ ଭଣ୍ଡା ଅଧିକରେ ଏହିପ୍ରକାର। ଆମେତ ବଳେ ବଳେ କାହାରିଠାକୁ ଯାଇନା,

ଲୋକେ ଆମକୁ ନେହୁରା କରି ଡାକନ୍ତି। କଉଡ଼ି କଣ କାହାରିକୁ ପୀଡ଼ା ହେଉଛି ?

ବାବାଜୀ ଅଜ୍ଞାନତା, ଭ୍ରମ ଓ କୁସଂସ୍କାର ହେତୁ ଲୋକଙ୍କର ଗୁଣିବିଦ୍ୟାରେ ବିଶ୍ୱାସ ଥିବାରୁ ସେମାନେ ଗୁଣିଙ୍କୁ ନେହୁରା କରନ୍ତି, ନଚେତ୍ ପଚାରନ୍ତେ ନାହିଁ। ତୁ ଯେବେ ଜାଣି ଶୁଣି ସେମାନଙ୍କୁ ଭଣ୍ଡିଲୁ ତେବେ ତୁ ଠକ ହେଲୁ ନାହିଁ ?

ପୂଜାରୀ ଏକପ୍ରକାର ହେଉଛି।

ବାବାଜୀ ତେବେ ତୁ ଏ ବ୍ୟବସାୟ ଛାଡ଼ି ଦେ, ଠକବୃତ୍ତି ବଡ଼ ମନ୍ଦ।

ପୂଜାରୀ ଏ ବୃତ୍ତି ଛାଡ଼ିଦେଲେ ମୋ ନିର୍ବାହ ଚଳିବ କିପରି ? ବାବୁଙ୍କଠାରୁ ଦେଢ଼ଟଙ୍କା ଦରମାହା ପାଏ ସେଥିରେ କି ମୋ କୁଟୁମ୍ବ ପୋଷାଯିବେ ? ଆପଣ ସିନା ତିନି ଦଉଡ଼ି କାଟି ଦେଇ ବସିଚନ୍ତି, ମୋ ବେକରେ ପାଞ୍ଚ ପ୍ରାଣୀ ବନ୍ଧା।

ବାବାଜୀ ତେବେ କିଛି ସଦୁପାୟ କରି କଉଡ଼ି ଉପାର୍ଜନ କର, ଅସତରେ ରହ ନା।

ପୂଜାରୀ ବୁଝିଲ ନାହିଁ କି ମହାରାଜ ! ଯେ ସତରେ ରହିଲା ସେ ମରା ପଡ଼ିଲା, ଯେ ଅସତରେ ରହିଲା ତାହାର କଉଡ଼ି ମାଡ଼ିଗଲା।

ବାବାଜୀ ନା ନା, ଏହା ବଡ଼ ଭ୍ରମ ଅଟେ। ସତରେ ପଣେ ଭଲ ଅସତରେ କାହାଣେ ଭଲ ନୁହେ। "ଅସତଧନ ଫଳେ ବହୁତ। ଯିବା ବେଳେ ଯାଏ ମୂଳ ସହିତ।"

ପୂଜାରୀ ତାହା ମୁଁ ଜାଣେ ନାହିଁକି। ସେତ ପଛର କଥା, ବର୍ତ୍ତମାନକୁ ଲୋଭ ସମ୍ଭାଳିବାର କଠିଣ, ପୁଣି ମୁଁ ଜାତିରେ ବ୍ରାହ୍ମଣ।

ବାବାଜୀ ; ତେବେ ଲୋଭଇ ତୋ ବେକରେ ବନ୍ଧା, ପାଞ୍ଚ ପ୍ରାଣୀ ନୁହେ। ଆଚ୍ଛା, କି ଇଚ୍ଛାରେ ତୋର ଲୋଭ ହୁଏ।

ପୂଜାରୀ କିପରି ପଣେ ଲାଭ କରି ସୁଖରେ ରହିବି, ଏହି ମୋ ଲୋଭ ଇଚ୍ଛା।

ବାବାଜୀ ଏ ଇଚ୍ଛା ମନ୍ଦ ନୁହେ ବରଂ ଗୃହିଙ୍କ ପକ୍ଷରେ ଏହା ଉଚିତ, କିନ୍ତୁ ଅନ୍ୟାୟ ରୂପେ ଲାଭ କରିବାର ଉଚିତ ନୁହେ। କଥାରେ କହନ୍ତି "ଅନ୍ୟାୟରେ କଡ଼ାଏ ନେଲେ କାହାଣେ ନଷ୍ଟ ହୁଏ"। ଅତଏବ ପରକୁ ଠକିଲେ ଲାଭ ନାହିଁ କେବଳ ଅଲାଭ।

ମିଥ୍ୟା ପ୍ରବଞ୍ଚନା ଅପହରଣ ଇତ୍ୟାଦି ଅସତ୍ ଉପାୟରେ ଅର୍ଥ ଲାଭ ହୁଏ ସତ, କିନ୍ତୁ ପରିଶେଷେ ସେସବୁରୁ ଅନେକ ଅନର୍ଥ ଜାତ ହୁଏ। ସେସବୁ ପାପ ଅଟେ, ପାପର ଅଳୀକ ସୁଖ କ୍ଷଣକାଳର କିନ୍ତୁ ତହିଁର ଅସୀମ ଅସୁଖ କାଳକାଳର। ଯଦି ଲାଭ ଓ ସୁଖର ଇଚ୍ଛା ଅଛି, ତେବେ ଯେପରି ଇହକାଳ ଓ ପରକାଳରେ ଲାଭ ଓ ସୁଖ ହୁଏ ସେପରି କରିବାର ଉଚିତ, ସଂସାର କେତେ ଦିନର ? ତୁ ଗୁଣିବ୍ୟବସାୟରେ କେତେ ମିଥ୍ୟା କହୁଥିବୁ "ନାନୃତାତ୍ ପାତକଂ ପରଂ" ଅର୍ଥାତ୍ ମିଥ୍ୟାରୁ ବଳି ପାତକ ନାହିଁ। ଏସବୁ ଛାଡ଼ି ଦେ, ପରିଶ୍ରମ ଓ ଯତ୍ନ କଲେ ସଦୁପାୟରେ ଯଥେଷ୍ଟ ଉପାର୍ଜନ ହୋଇପାରେ।

ପୂଝାରୀ — ହଁ ମହାରାଜ ଠିକ୍ କଥା, ଦେଖି ଯେମନ୍ତେ ହବ। ଆପଣଙ୍କଠାରୁ ଅନେକ ଜ୍ଞାନ ପାଇଲି। ଆପଣ ଗୁରୁଦେବଠୁଁ ବଳିଲେ, ଯଥାର୍ଥ ଗୁରୁ ତ ଆପଣ ହେଲେ। ମୋ ଲାଗି ଆପଣ ଅନେକ କଷ୍ଟ ପାଇଲେ ଏହା ମୋ ମନରୁ ଯିବ ନାହିଁ; ରାତ୍ର ବିଶେଷ ହେଲାଣି ଆପଣ ଶୟନ କରନ୍ତୁ, ମୁଁ ଆସେଁ।

ବାବାଜୀ — ଆଚ୍ଛା ବାବା ଆ, ଆମ କଷ୍ଟ କଥା ତୋ ମନରୁ ଯାଉ, ମାତ୍ର ଉପଦେଶ ସବୁ ଯେପରି ତୋ ମନରୁ ନ ଯାଉ।

ପୂଝାରୀ — (ଆନନ୍ଦିତ ହୋଇ) ଆପଣ ସେହି କଲ୍ୟାଣ କରନ୍ତୁ। ନମସ୍କାର।

ବାବାଜୀ — ନମସ୍କାର—ଈଶ୍ୱର ସେହିପରି ସୁମତି ଦିଅନ୍ତୁ।



ସମାପ୍ତ।

ଆଶୀର୍ବାଦ